ପ୍ରଥମ ପ୍ରକାଶ :
ଅଗଷ୍ଟ, ୧୯୮୪

ପ୍ରକାଶକ :
**ଶ୍ରୀ ରବୀନ୍ଦ୍ରନାଥ ମହାନ୍ତ**
କଟକ ପବ୍ଲିଶିଂ ହାଉସ୍
ବାଲୁବଜାର, କଟକ-୭୫୩୦୦୨

ମୁଦ୍ରଣ :
**ସଂସାର ପ୍ରେସ**
କଟକ-୭୫୩୦୦୯

ମୂଲ୍ୟ ଟ ୩.୫୦

# ବହି ବିଷୟରେ ପଦେ

ଆବହମାନ କାଳରୁ ମୟୂର ତାର ଅତୁଳନୀୟ ରୂପ-ସମ୍ଭାରରେ ପୃଥିବୀବାସୀଙ୍କୁ ମୁଗ୍ଧ କରି ଆସିଛି । ଭାରତ ଏବଂ ତାର ପୂର୍ବ ପଟେ ଥିବା କେତେକ ଅଞ୍ଚଳ ଏହାର ଜନ୍ମସ୍ଥାନ ହେଲେ ହେଁ ପୃଥିବୀର ଅନ୍ୟାନ୍ୟ ଦେଶର ଲୋକେ କୌତୂହଳ-ବଶତଃ ଏହି ସୁନ୍ଦର ପକ୍ଷୀକୁ ନିଜ ଦେଶକୁ ନେଇ ପାଳି ଆସୁଛନ୍ତି । ସେହି ପ୍ରାଚୀନ କାଳର ସରଳବିଶ୍ୱାସୀ ନରନାରୀ ମୟୂରର ସୃଷ୍ଟି, ବିଶେଷତଃ ତାର ଚନ୍ଦ୍ରିକା ବିଷୟରେ ଯାହା ସବୁ କଳ୍ପନା କରିଥିଲେ, ତାହା ଲୋକ କାହାଣୀ ରୂପରେ ସେହି ସେହି ଦେଶରେ ପ୍ରଚଳିତ ଅଛି । ପିଲାମାନଙ୍କ ପାଇଁ ଆମ 'ଜାତୀୟ ପକ୍ଷୀ' ବିଷୟରେ ଏ ବହିଟି ଲେଖିଲାବେଳେ ସେହି ଲୋକଗଳ୍ପଗୁଡ଼ିକୁ ସେଥିରେ ସନ୍ନିବେଶିତ କରିବାର ପ୍ରଲୋଭନ ଏଡ଼ି ପାରିଲି ନାହିଁ । ଏଥି ମଧ୍ୟରୁ କେତେଗୋଟି ଗଳ୍ପ ବିଭିନ୍ନ ମାସିକ ପତ୍ରିକାରେ ପ୍ରକାଶ ପାଇସାରିଛି । ମୋର ଆଶା, ପିଲାମାନେ ସେଗୁଡ଼ିକୁ ଉପଭୋଗ କରିବା ସଙ୍ଗେ ସଙ୍ଗେ ମୟୂର ସମ୍ବନ୍ଧରେ ଆବଶ୍ୟକ ଜ୍ଞାନ ଏଥିରୁ ଲାଭ କରିବେ ।

ଲେଖକ

# ସୂଚୀ

# ଚମତ୍କାର ଶାଢ଼ୀ

ଇଏ ପାଚେରୀ ଉପରେ ବସିଥିଲା ବସନ୍ତବାବୁଙ୍କ ପୋଷା ମୟୂର । ଇନ୍ଦ୍ରଧନୁପରି ବଙ୍କା ବେକଟାକୁ ଲମ୍ବାଇ ଦେଇ ପର୍ବତିଆ ଖଡ଼ା ଗଛରୁ କଅଁଳିଆ ପତ୍ରମାନ ଖାଉଥିଲା । ଆଲୋକ ଓ ଗୁଡ଼ୁ ଖଣ୍ଡେ ଦୂରରେ ଠିଆ ହୋଇ ତାକୁ ଏକ ଲୟରେ ଚାହିଁଥିଲେ ।

"ଆମେ ତାକୁ ଖାଇବାକୁ ଦେଲେ ସେ ତଳକୁ ଆସନ୍ତା । ଯା, ମୁଠାଏ ଚାଉଳ ନେଇ ଆସିବୁ ।" ଭାଇ କଥା ଶୁଣି ଗୁଡ଼ୁ ଘରକୁ ଦୌଡ଼ିଯାଇ ମୁଠାଏ ଚାଉଳ ନେଇ ଆସିଲା । ଆଲୋକ ତା'ଠାରୁ ଚାଉଳ ନେଇ ଗୋଟିଏ ମେଲା ଜାଗାରେ ବୁଣିଦେଲା ।

ଭାଇ ଭଉଣୀ ପଛକୁ ଘୁଞ୍ଚି ଆସିଲେ । ମୟୂର ତଳକୁ ଡେଇଁ ପଡ଼ି ଚାଉଳ ଖୁଣ୍ଟିବାରେ ଲାଗିଲା । କି ଆନନ୍ଦ ପିଲା ଦୁହିଁଙ୍କର !

ସେ ପୋଷା ମୟୂରଟା ଦିନେ ଦିନେ ତାଙ୍କ ବାଡ଼ିକୁ ବୁଲିଆସେ । ଆଲୋକ ଓ ଗୁଡ଼ୁ ତାକୁ ଚାଉଳ କିମ୍ବା ମୁଢ଼ି ଦିଅନ୍ତି । ଖଣ୍ଡେ ଖଣ୍ଡେ ରୁଟି ଛିଣ୍ଡାଇଦେଲେ ମଧ୍ୟ ସେ ଆନନ୍ଦରେ ଖାଏ ।

ମୟୂର ସାପକୁ ମାରି ଖାଇଯାଏ ବୋଲି ଆଲୋକ ଶୁଣିଛି । ତା ଥଣ୍ଟ ଓ ନଖ ଖୁବ୍ ଶକ୍ତ ଦେଖାଯାଏ । ତେଣୁ ତା ପାଖକୁ ଯିବାପାଇଁ ସେମାନଙ୍କୁ ଡରମାଡ଼େ ।

ଦିନେ ନିଦରୁ ଉଠି ଆଲୋକ ଗୁଡ଼ୁକୁ କହିଲା, "କାଲି ରାତିରେ ମୁଁ ଗୋଟାଏ ଅଦ୍ଭୁତ ସ୍ୱପ୍ନ ଦେଖିଛି ।"

"କ ସ୍ୱପ୍ନ ?" ପୁସ୍ପା ଆଗ୍ରହରେ ପଚାରିଲା ।

ଆଲୋକ କହିଲା, "ଶୁଣିବୁ ଯଦି ବସ । ସେଇ ବସନ୍ତବାବୁଙ୍କ ପୋଷା ମୟୂରକୁ ମୁଁ କାଲି ସ୍ୱପ୍ନ ଦେଖିଲି । ସେ ମୋ ଆଗକୁ ଆସି କହିଲା, 'ଆଲୋକ, ତୁ ମତେ ଖୁବ୍ ଭଲପାଉ । ମୋ ମନ ହୁଏ ତୋ ସାଙ୍ଗରେ ଖେଳନ୍ତି ଓ କଥାବାର୍ତ୍ତା ହୁଅନ୍ତି । କିନ୍ତୁ କେମିତି ହେବ ? ତୁ କଣ ମୋ କଥା ବୁଝିବୁ ? ତୁମ ସ୍ୱର କେଡ଼େ କୋମଳ, ମୋ ସ୍ୱର କେଡ଼େ କର୍କଶ ! ମୁଁ ଏହିପରି ଚିନ୍ତା କରୁଥିଲାବେଳେ ଠାକୁରେ ମତେ ଦୟା କଲେ ।

'ତୁ ଜାଣିଥିବୁ ଆମେ କାର୍ତ୍ତିକେୟଙ୍କ ବାହନ । ସେ ମୋ ମନକଥା ଜାଣି ମତେ ମଣିଷପରି କଥା କହିବାକୁ ଶିଖାଇଦେଲେ ।'

ଆଲୋକ କହିଲା, "ତୁ ଯେମିତି ମଣିଷ ଭଳି କଥା କହୁଚୁ । ମତେ ଶୁଣିବାକୁ ଭଲ ଲାଗୁଚି । ମୁଁ ଗପ ଶୁଣିବାକୁ ଭଲପାଏ । ତୁମ ମୟୂର ଜାତିବିଷୟରେ କଣ କିଛି ଗପ ଅଛି ?"

ମୟୂର କହିଲା, "ବହୁତ ବଢ଼ିଆ ଗପ ଅଛି । ପୁରୁଣା କାଳର ଗପ । ଶୁଣ୍ ତାହାହେଲେ । ଆସାମ ରାଜ୍ୟରେ ଗାରୋ ନାମକ ଏକ ଜାତିର ଲୋକ ବାସ କରନ୍ତି । ଅନେକ ବର୍ଷତଳେ ସେଇ ଗାରୋ ଜାତିରେ ଜଣେ ଧନୀ ଲୋକ ଥିଲା । ତାର କେବଳ ଗୋଟିଏ ଝିଅଛଡ଼ା ଅନ୍ୟ କିଛି ପିଲାପିଲି ନ ଥିଲେ । ସେ ଝିଅଟିର ନାମ ଚମ୍ପା । ତାଙ୍କ ଜାତିରେ ନିୟମ ଥିଲା ଯେ ବାପ ମରିଗଲେ ଝିଅ ତାର ସମସ୍ତ ସମ୍ପତ୍ତି ଭୋଗ କରିବ । କାଳେ ସମ୍ପତ୍ତି ଅନ୍ୟ ଲୋକ ହାତକୁ ଚାଲିଯିବ, ସେଥିପାଇଁ ନିଜ ବନ୍ଧୁବାନ୍ଧବ ଭିତରେ ସେମାନେ ଝିଅମାନଙ୍କୁ ବିବାହ କରି ଦେଉଥିଲେ ।

ଚମ୍ପାର ବିବାହ ବୟସ ହେବାରୁ ଜଣେ ମାମୁ ପୁଅ ଭାଇ ସଙ୍ଗେ ତାର ବାପ ମାଆ ତାକୁ ବିଭା- କରିଦେଲେ । ସେହି ଧର୍ମ ଲୋକଟି ଦେବତାଙ୍କୁ ପୂଜା କରି ତାଙ୍କଠାରୁ ଖଣ୍ଡେ ସୁନ୍ଦର ଛୋଟ ସିଲ୍‌କ ପାଇଥିଲା । ଏହି ସିଲ୍‌କର ଏକ ମ୍ୟାଜିକ୍ ଗୁଣ ଥିଲା । ସେଥିଯୋଗୁଁ କୌଣସି ଚୋର ତାକୁ ଚୋରାଇ ନେବାକୁ ସାହସ କରୁ ନ ଥିଲେ । ଦେବତାଙ୍କଠାରୁ ଶିଖିଥିବା ମନ୍ତ୍ର ପଢ଼ି ସେହି ସିଲ୍‌କରେ ହାତ ଦେବାକୁ ହୁଏ । ମନ୍ତ୍ର ନ ବୋଲି ତାକୁ ଛୁଇଁଦେଲେ ବିପଦ ଘଟିବ ବୋଲି ଦେବତା କହିଥିଲେ । ବିବାହବେଳେ ଚମ୍ପାକୁ ସେହି ସିଲ୍‌କଟି ଦେଇ ତାର ପିତା ମନ୍ତ୍ରଟି ମଧ୍ୟ ତାକୁ ଶିଖାଇ ଦେଇଥିଲେ ।

ବିବାହର କିଛି ଦିନପରେ ଚମ୍ପାର ପିତାମାତା ମରିଗଲେ । ତେଣୁ ଝିଅ ଜୋଇଁ ସମସ୍ତ ସମ୍ପତ୍ତିର ମାଲିକ ହୋଇ ସେଇ ଘରେ ସୁଖରେ କାଳ କାଟିଲେ ।

ଦିନେ ଚମ୍ପାର ମାଛ ଧରିବାକୁ ମନ ହେଲା । ସେ ବନ୍‌ଶୀଖଣ୍ଡା ଧରି ବଗିଚା ଭିତରେ ଥିବା ପୋଖରୀ କୂଳକୁ ଚାଲିଗଲା । ମାଛ ଯିବା ପୂର୍ବରୁ ସେ ମ୍ୟାଜିକ୍ ସିଲ୍‌କଟିକୁ ଅଗଣାରେ ଶୁଖାଇ ଦେଇ ତାର ସ୍ୱାମୀକୁ କହିଲା, 'ମୁଁ ଆସିବା ପର୍ଯ୍ୟନ୍ତ ଏ ସିଲ୍‌କ ଲୁଗାଟି ଏଇଠାରେ ଶୁଖୁଥାଉ । ଆକାଶରେ ତ ମେଘ ନାହିଁ, ଭୟ କଣ ? ଯଦି ବା ବର୍ଷା ହୁଏ, ତୁମେ ସେଥିରେ ହାତ ଦେବ ନାହିଁ । ମୁଁ ଆସିଲେ ତୋଳିବି ।' ସେ ପର୍ଯ୍ୟନ୍ତ ସେ ତା ସ୍ୱାମୀକୁ ସେ ମ୍ୟାଜିକ୍ ସିଲ୍‌କ କମ୍ବା ମନ୍ତ୍ରକଥା କିଛି କହି ନ ଥିଲା ।

ଚମ୍ପା ମାଛ ଧରିବାକୁ ଚାଲିଗଲାପରେ ଅଚାନକ ମେଘ ଘୋଟି ଆସିଲା ଏବଂ ଆକାଶରୁ ବଡ଼ ବଡ଼ ବର୍ଷା ଟୋପା ଅଜାଡ଼ି ହୋଇ-ପଡ଼ିଲା । ସ୍ୱାମୀର ଡାକ ଶୁଣି ସେ ଅଣନିଃଶ୍ୱାସୀ ହୋଇ ଧାଇଁଲା

ଘରକୁ; ମାତ୍ର ସେ ଆସିବାଯାଏ ତାର ସ୍ୱାମୀ ସମ୍ଭାଳ ପାରନ
ନାହିଁ । ସେ ଭାବଲା ଦାମିକା ସିଲ୍‌କଟି ଭିଜଗଲେ ନଷ୍ଟ ହୋଇଯିବ
ତେଣୁ ସ୍ତ୍ରୀର କଥା ଭୁଲିଯାଇ ସେ ତାକୁ ତୋଳ ଆଣିବାକୁ ଦଉଡ଼
ଗଲା । କନ୍ତୁ କ ସର୍ବନାଶ ! ସେ ଯେମିତ ସେଥିରେ ହାତ ଦେଇଛ
ଓଦା ସିଲ୍‌କଟି ତା ଦେହରେ ଗୁଡ଼େଇ ହୋଇଗଲା ଏବଂ ତ
ମନୁଷ୍ୟରୂପ ଆସ୍ତେ ଆସ୍ତେ ମିଳେଇଗଲା । ସେ ହୋଇଗଲା ଗୋଟିଏ
ଅଦ୍ଭୁତ ପକ୍ଷୀ !

ଚମ୍ପା ଆସି ଦେଖେ ତ ତା ସ୍ୱାମୀ ଏକ ପକ୍ଷୀ ପାଲଟି
ଯାଇଛ ଏବଂ ମ୍ୟାଜିକ୍ ସିଲ୍‌କଟି ତା ଦେହରେ ଜଡ଼ଯାଇଛ
ଦୁଃଖରେ ଅଧୀର ହୋଇ ସେ ସ୍ୱାମୀ ଦେହରୁ ଲୁଗାଖଣ୍ଡି ଟାଣି
ଆଣିବାକୁ ଚେଷ୍ଟା କଲା । କନ୍ତୁ ସେତେବେଳକୁ ସେ ଲୁଗାର



କେବଳ ହାତେ ମାତ୍ର କାନ ଅବଶିଷ୍ଟ ରହିଥିଲା । ମନର ଉତ୍କଣ୍ଠାରେ
ମନ୍ତ୍ରଟି ବୋଲିବାକୁ ଯେତେବେଳେ ତାର ମନେ ପଡ଼ିଲା ନାହିଁ; ତେଣୁ
ସେ ମଧ୍ୟ ଗୋଟିଏ ମୟୂରୀ ପାଲଟିଗଲା । ମାତ୍ର ତା ରୂପରେ ତା

ସ୍ୱାମୀର ରଙ୍ଗରଙ୍ଗିଆ ଶୋଭା ଆଉ ଦେଖାଗଲା ନାହିଁ । ସେହି ଦିନଠାରୁ ସେମାନେ ମୟୂର ମୟୂରୀ ହୋଇ ମନୁଷ୍ୟ ବସତି ଛାଡ଼ି ବଣକୁ ପଳାଇଗଲେ ।

ଗାଉଁମାନଙ୍କର ବିଶ୍ୱାସ, ଆଜି ଯେତେ ମୟୂର ମୟୂରୀ ଅଛନ୍ତି ପୃଥିବୀରେ ଅଛନ୍ତି, ସେ ସମସ୍ତେ ଏଇ ଦୁହିଁଙ୍କର ବଂଶଧର । କାଳେ କେହି ଅବିଶ୍ୱାସ କରିବ, ସେଥିପାଇଁ ସେମାନେ ଆଉ ଏକ ମଜା କଥା କହନ୍ତି । ତୁ ଜାଣୁ କି ନାହିଁ, ମେଘ ଉଠାଇଲେ ଆମେ କେଉଁ କେଉଁ ରଡ଼ି ଛାଡ଼ୁ । କାହିଁକି ଜାଣୁ ? ବର୍ଷା ହେଲେ କାଳେ ଆମ ଦେହର ସେ ରଙ୍ଗୀନ୍ ସିଲ୍କ ଧୋଇ ହୋଇଯିବ, ସେଇ ଭୟରେ ଆମେ ସେମିତି ପାଟି କରୁ ।"

ଛୁଟ୍ପା କହିଲା, "ତମ୍ଭାର ସିଲ୍କ ଶାଢ଼ୀ ! ମୟୂର ଦେହ ସତରେ ଏକା ସିଲ୍କପରି ଚକ୍ ଚକ୍ ଦିଶେ । ଗପଟି ସତ ହୋଇଥିବ ।"

"ହୋଇଥାଇ ପାରେ, କିନ୍ତୁ ସେ କଥା ଭାବିବାକୁ ମତେ ସମୟ ନ ଥିଲା । ରାତି ପାହି ଆସୁଥିବାରୁ ମୋ ନିଦ ଭାଙ୍ଗିଗଲା ଏବଂ ତା ସଙ୍ଗେ ସଙ୍ଗେ ମୟୂରର ରୂପ ଶୂନ୍ୟରେ କୁଆଡ଼େ ମିଳେଇଗଲା ।"

"ଆଉ ସେ ମୟୂର ଆସିବ ନାହିଁ ?" ଛୁଟ୍ପା ପଚାରିଲା ।

"କିଏ ଜାଣେ ? ତା ଗପ ସରି ନ ଥିଲେ ସେ ପୁଣି ଆସିପାରେ ।"



# ଅସୁରର ଆଖି

ତା ପରଦିନ ସକାଳେ ନିଦରୁ ଉଠିଲାମାତ୍ରେ ଛୁଆ ତା ଭାଇକୁ ପଚାରିଲା, "ଭାଇ, ଆଜି କିଛି ସପନ ଦେଖିଛ ?"

ଆଲେକ କହିଲା, "ଚମତ୍କାର ! ସିନେମା ଭଳି ମତେ ଲାଗୁଛି । କାଲି ସେଇ ମୟୂର ଆସି ସ୍ୱପ୍ନରେ ମତେ ଆଉ ଗୋଟାଏ ଗପ କହିଲା । ଶୁଣିବୁ ?"

"ହଁ କହ; କିନ୍ତୁ ସେ ମତେ କାହିଁକି ସ୍ୱପ୍ନ ଦେଖାଉ ନାହିଁ ?"

"ସେ ବୋଧହୁଏ ଭାବୁଥିବ ତୁ ପିଲା ଲୋକ; ତୋର ମନେ ରହିବ କି ନା ?"



"ତୁମେ ତାକୁ କହିବ ମୁଁ ନିଶ୍ଚେ ମନେ ରଖିପାରିବି । ହଉ, କହ ଏଥର କାଲି କି ଗପ ଶୁଣିଲ ।'

ଆଲେକ ଆରମ୍ଭ କଲା ।

"ମୟୂର ମତେ ପଚାରିଲା, 'ଗ୍ରୀସ୍ ଦେଶ କେଉଁଠି ଜାଣିଚ ?"

ମୁଁ କହିଲି, 'ହଁ, ଗ୍ରୀସ୍ ଇଉରୋପରେ । ସାର ଆଲେକ-ଜାଣ୍ଡରଙ୍କ ଦେଶ ସେ । ଅନେକ ବର୍ଷ ତଳେ ସେ ଆମ ଭାରତ ଆକ୍ରମଣ କରିଥିଲେ ।'

'ଠିକ୍ କହୁଚୁ । ସେଇ ଆଲେକଜାଣ୍ଡର ଭାରତବର୍ଷରୁ ଫେରିଲାବେଳେ ସାଙ୍ଗରେ ବହୁତ ମୟୂର ନେଇଯାଇଥିଲେ; କାରଣ ତାଙ୍କ ଦେଶରେ ମୟୂର ନ ଥିଲେ । ପରେ ରୋମର ଲୋକମାନେ ଗ୍ରୀସ୍‌ରୁ ମୟୂର ନେଇ ପାଳିଲେ । ଆମର ପର ପରି ସୁନ୍ଦର ଜିନିଷ ସେମାନଙ୍କ ଦେଶରେ ନ ଥିଲା । ତେଣୁ ଗୋଛା ଗୋଛା ମୟୂର ଚନ୍ଦ୍ରିକା ଭାରତରୁ ନେଇ ସେମାନେ ଘର ସଜାସଜି କରୁଥିଲେ ।

ରୋମାନ୍‌ମାନେ ମୟୂର ପାଳୁଥିଲେ ମାଂସ ଖାଇବାପାଇଁ । ମୟୂରୀ ମାଂସ ସେମାନଙ୍କର ଅଧିକ ପ୍ରିୟ ଥିଲା ଏବଂ ଭୋଜି ଶେଷରେ ଏହା ପରଶା ଯାଉଥିଲା । ପ୍ରସିଦ୍ଧ ରୋମାନ୍ ସମ୍ରାଟ ସାର୍ଲିମେନ ଗୋଟିଏ ଗୋଟିଏ ଭୋଜିରେ ହଜାରେ ହଜାର ମୟୂର ମରାଉଥିଲେ । ଏହି ସମୟରେ ମେକ୍‌ସିକୋ ଦେଶରୁ ଟର୍କି କୁକୁଡ଼ା ଆମଦାନି ହେଲା । ମୟୂର ମାଂସ ଅପେକ୍ଷା ତାର ମାଂସ ଅଧିକ ସୁସ୍ୱାଦୁ ଥିବାରୁ ଆମ୍ଭେମାନେ ବଞ୍ଚିଗଲୁ । ତା ନ ହୋଇଥିଲେ ସେମାନେ ଆମର ବଂଶ ଲୋପ କରିଦେଇଥାନ୍ତେ ।

ସଜାସଜି କାମରେ ଆମ ଚନ୍ଦ୍ରିକାର ଆଦର ମଧ୍ୟ ସେ ଦେଶରୁ କମିଗଲା । କାହିଁକି ଜାଣ ? ଶୁଣିଲେ ତମେ ହସ ମାଡ଼ିବ । ସେମାନଙ୍କ ଭିତରୁ କେହି କେହି ଆମର ଜନ୍ମ ବିଷୟରେ ଏକ ବିଚିତ୍ର ଗଳ୍ପ ପ୍ରଚାର କଲେ । ସେଥିରୁ ଲୋକମାନଙ୍କର ବିଶ୍ୱାସ ହେଲା ଯେ ଆମ ଚନ୍ଦ୍ରିକାରେ ଯେଉଁ ଗୋଲ ଗୋଲ ଚିହ୍ନ ଅଛି, ସେଗୁଡ଼ାକ ଅସୁରର ଆଖି ! ଯେ ତାକୁ ଘରେ ରଖିବ, ତାର ଅମଙ୍ଗଳ ଘଟିବ ।

ମୁଁ ତମେ ଆସାମର ଗାରୋମାନଙ୍କ ଗପ କହୁଛି । ବର୍ତ୍ତମାନ ଏ ଅସୁରର ଆଖି ଗଳ୍ପଟା ଶୁଣ ।'

'ଅସୁରର ଆଖି !' ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି । ମଯୂର କହିଲା, 'ହଁ, ଅସୁରର ଆଖି ଆମ ଚନ୍ଦ୍ରିକାରେ କୁଆଡ଼େ ଖଞ୍ଜା ହୋଇଛି । ତୁ ଆଗ ଶୁଣ୍ ସେ ଗପଟା ।

ଜୁପିଟର ଥିଲେ ସ୍ୱର୍ଗରେ ଦେବତାମାନଙ୍କର ରାଜା । ତୁମେ ଯାହାଙ୍କୁ ଇନ୍ଦ୍ର କହୁଛ, ସେମାନେ ତାଙ୍କୁ ଜୁପିଟର କହୁଥିଲେ । ତାଙ୍କ ରାଣୀଙ୍କ ନାମ ଥିଲା ଜୁନୋ । ସେ ଭାରି ସୁନ୍ଦରୀ ବୋଲି ତାଙ୍କ ମନରେ ଗର୍ବ ଥିଲା । ଅନ୍ୟ କୌଣସି ସ୍ତ୍ରୀର ପ୍ରଶଂସା ସେ ସହିପାରୁ ନ ଥିଲେ । ସେ ଅନେକ ସମୟରେ ଜୁପିଟରଙ୍କ ସାଙ୍ଗରେ କଳି କରୁଥିଲେ । ଯେଉଁ ସୁନ୍ଦରୀ ହେଲେ ସୁଦ୍ଧା ଏଭଳି କଳିହୁଡ଼ୀ ଭାର୍ଯ୍ୟାକୁ ନେଇ କିଏ କେଉଁ ସୁଖରେ ରହିପାରେ ? ଜୁପିଟର ଜୁନୋଙ୍କ ଉପରେ ବିରକ୍ତ ହୋଇ ସ୍ଥିର କଲେ ମର୍ତ୍ତ୍ୟରୁ ଜଣକୁ ନେଇ ନୂଆ ରାଣୀ କରିବେ ।

ଆୟୋ ନାମକ ଜଣେ ସ୍ତ୍ରୀ ଲୋକକୁ ସେ ଏଥିପାଇଁ ବାଛିଲେ । କିନ୍ତୁ ଜୁନୋଙ୍କୁ ଏ କଥା ଅଛପା ରହିଲା ନାହିଁ । ତାଙ୍କ ମନରେ ଈର୍ଷା ହେଲା । ଜଣେ ମଣିଷ ଆସି ସ୍ୱର୍ଗରେ ରାଣୀ ହେବ ? ତା କଦାପି ହୋଇ ନ ପାରେ । ତାଙ୍କୁ ରାଣୀ କରାଇ ନ ଦେବାପାଇଁ ସେ ନାନା କୂଟ କୌଶଳ କଲେ । ଜୁପିଟର ଦେଖିଲେ ଜୁନୋଙ୍କର ଯେଉଁଭଳି ମନ୍ଦ ପ୍ରକୃତି, ସେ ଆୟୋଙ୍କୁ ନିଶ୍ଚୟ ମାରିଦେବେ । ତେଣୁ ତାଙ୍କ କବଳରୁ ଆୟୋଙ୍କୁ ରକ୍ଷା କରିବା ପାଇଁ ସେ ତାଙ୍କୁ ଗୋଟାଏ ଧଳା ଗାଈ କରିଦେଲେ ।

ଜୁନୋଙ୍କ ରାଗ ଆହୁରି ବଢ଼ିଗଲା । ସେ ଉକ୍ତ ଗାଈକୁ ତଡ଼ି ତଡ଼ି ଗୋଟାଏ ବଡ଼ ପଡ଼ିଆକୁ ନେଇଗଲେ । ସେ ପଡ଼ିଆର ଚାରି ପାଖରେ ବାଡ଼ ଘେରା ହୋଇଥିଲା । କାଳେ ଗାଈଟା ସେଠାରୁ

ପକାଇପିବ, ସେଥିଲାଗି ଜନୋ ଅସୁରକୁ ସେ ଜଗୁଆଳ ରଖି-ଦେଲେ । ତା ନାଁ ଆର୍ଗସ୍ । ତାର ଶହେଟା ଆଖି । ତା ଆଗରୁ ଖସି ପଳାଇବା ସହଜ ନ ଥିଲା, କାରଣ ଶୋଇଥିଲାବେଳେ ସେ ପଚାଶଟା ଆଖି ବୁଜଥାଏ । ଆଉ ପଚାଶଟା ଖୋଲା ରଖେ । ଏଇଭଳି ଜଣେ ଅସୁରକୁ ଜଗାଇ ଦେଇ ଜୁନୋ ନିଶ୍ଚିନ୍ତ ରହିଲେ ।

ଜୁପିଟର ଦେଖିଲେ ଜଗୁଆଳକୁ ନ ମାରିଲେ ଆୟୋଙ୍କୁ ଉଦ୍ଧାର କରି ହେବ ନାହିଁ । ସେ ଗଲେ ବୁଧଙ୍କ ପାଖକୁ । କିନ୍ତୁ ବୁଧ ବା କଣ କରିବେ ? ଯେଉଁ ପ୍ରହରୀ ସବୁବେଳେ ଆଖି ଖୋଲା ରଖିଛି, ତାକୁ କିପରି ଧପେଇ ହେବ ? କୌଣସି ପ୍ରକାରେ ଆର୍ଗସ୍‌କୁ ଶୁଆଇ ନ ପକାଇଲେ ଆୟୋଙ୍କୁ ଉଦ୍ଧାର କରିବା ସମ୍ଭବ ନୁହେଁ । ଏହା ଭାବି ସେ ଗଲେ ନିଦ୍ରାଦେବତା ମର୍ଫିୟୁସ୍‌ଙ୍କ ପାଖକୁ ।

ନିଦ୍ରା ଦେବତାଙ୍କ ରାଜ୍ୟକୁ ଯିବା ସହଜ କଥା ନୁହେଁ । ସେ ଯେଉଁଠି ଥାନ୍ତି, ସେଠାରେ ସୂର୍ଯ୍ୟକିରଣ ପଡ଼େ ନାହିଁ । ପୂରାପୂରି ନିଃଶବ୍ଦ ରାଜ୍ୟ ସେ । ପପି ଫୁଲର ମାଳଟାଏ ମୁଣ୍ଡରେ ଗୁଡ଼ାଇ କଳା କାଠରେ ତିଆରି ଗଦି ଉପରେ ସେ ସବୁବେଳେ ଢୁଳାଉଥାନ୍ତି । ପପି କଣ ଜାଣିଛ ? ଯେଉଁ ଗଛର ଫଳରୁ ଅଫିମ ତିଆରି ହୁଏ, ସେଇ ଗଛ ସେ ।

ବୁଧ ବହୁ କଷ୍ଟରେ ତାଙ୍କ ପାଖକୁ ଯାଇ ନିଜର ଗୁହାରି ଜଣାଇଲେ । ମର୍ଫିୟୁସ ମୁହୂର୍ତ୍ତେ ମାତ୍ର ଦରଖୋଲା ଆଖିରେ ତାଙ୍କୁ ଚାହିଁଲେ ଏବଂ ବଡ଼ାଏ ପପି ଡାଳ ତାଙ୍କ ହାତରେ ଗୁଞ୍ଜି ଦେଇ ପୁଣି ଆଖି ବୁଜିଦେଲେ ।

ଯେଉଁ ପଡ଼ିଆରେ ଆୟୋ ଗାଈ ରୂପରେ ଚରୁଥିଲେ, ତା ଚାରିପଟେ ଶହେଆଖିଆ ଅସୁର ଆର୍ଗସ୍ ପହରା ଦେଉଥାଏ । ବୁଧ

କଛି ଦୂରରେ ଠିଆ ହୋଇ ମଧୁର ସ୍ୱରରେ ତାଙ୍କ ବଂଶୀ ବଜାଇଲେ । ଅସୁର କହିଲା, "ଏତେ ଦୂରରୁ ମତେ ଭଲ ଶୁଭୁ-ନାହିଁ । ପାଖକୁ ଆ ।"

ଏହା ଶୁଣି ବୁଧ ଧୀରେ ଧୀରେ ଅସୁର ପାଖକୁ ଗଲେ ତାଙ୍କ ଡାହାଣ ହାତରେ ଥାଏ ବଂଶୀ ଏବଂ ବାଁ ହାତରେ ପପି ଫୁଲର ଡାଳ । ପପି ଡାଳକୁ ସେ ଆସ୍ତେ ଆସ୍ତେ ହଲଉଥାନ୍ତି । ତାର ମିଠା ବାସନା ଅସୁର ନାକରେ ବାଜବାରୁ ତା ଆଖି ସଙ୍ଗେ ସଙ୍ଗେ ବୁଜି ହୋଇଆସିଲା । ଯେତେବେଳେ ତାର ଶହେଟିଯାକ ଆଖି ବୁଜି ହୋଇଗଲା, ସେତିକବେଳେ ବୁଧ ଯାଇ ଆୟୋଙ୍କୁ ପଡ଼ିଆ ବାହାରକୁ ଅଡ଼େଇଦେଲେ ।

କିନ୍ତୁ ଜୁନୋଙ୍କର ରାଗ ଅଣ୍ଟା ପଡ଼ି ନ ଥାଏ । ସେ ପଡ଼ିଆ ବାହାରେ ଜଗି ରହିଥିଲେ । ଗାଈ ପଳାଇଯାଉଥିବାର ଦେଖି ସେ ଗୋଟାଏ ବଡ଼ାକ ଡାଉଁଶ ଆଣି ତା ଦେହରେ ଛାଡ଼ିଦେଲେ । ଗାଈ ଯେତେବେଳେ ଚରିବାକୁ ବା ପାଣି ପିଇବାକୁ ବସିଲା, ଡାଉଁଶ ତାକୁ ଏପରି କାମୁଡ଼ି ଅଥୟ କଲା ଯେ ସେ ଏଣେ ତେଣେ ଧାଇଁଲା । କିନ୍ତୁ କେତେ ବା ଧାଇଁବ ? ଶେଷ ଜଙ୍ଗଲରେ ଛଟପଟ ହୋଇ ସେ ବୋବାଳି ଛାଡ଼ି ଛାଡ଼ି ଗୋଟାଏ ଜାଗାରେ ପଡ଼ିଗଲା । ସେ ଅପଲନ୍ତ ରାଜ୍ୟରେ ପଡ଼ି ଶେଷରେ ତା ପ୍ରାଣବାୟୁ ଉଡ଼ିଗଲା ।

ଜୁନୋ ଏଥର ପଡ଼ିଆ ଭିତରକୁ ଯାଇ ଆର୍ଗସ୍‌କୁ ଖୋଜିଲେ । ତାର ଶହେ ଆଖିର ନଜରକୁ ଏଡ଼ିଦେଇ ଗାଈଟା କେମିତି ପଳାଇଲା, ସେ ଭାବି ପାରୁ ନ ଥିଲେ । ଦେଖିଲେ ଅସୁରଟା ଗାଢ଼ ନିଦରେ ଶୋଇପଡ଼ିଛି ।

ସେ ତା ପାଖକୁ ଯାଇ କହିଲେ—'ବର୍ତ୍ତମାନ ବୁଝିଲି । ଜୁପିଟର ଓ ଦେବତାମାନେ ମିଶି ତତେ ଶୁଆଇ ପକାଇଛନ୍ତି । ତୋର ଶହେଟାଯାକ ଆଖିକୁ ଚିରକାଳ ପାଇଁ ବୁଜିଦେବେ ବୋଲି । କିନ୍ତୁ ତା ହୋଇପାରିବ ନାହିଁ । ମୁଁ ଏପରି ଉପାୟ କରିଦେବି ଯେ ଚିରକାଳପାଇଁ ତୋ ଆଖିଗୁଡ଼ାକ ଖୋଲି ରହିବ ଏବଂ ତୁ ମୋର ଜଗୁଆଳ ହୋଇ ସବୁଦିନେ ରହିବୁ ।'



ତାଙ୍କ ପାଟିରୁ କଥା ସରିଛି କି ନାହିଁ, ଆର୍ଗସ୍ ଯେଉଁଠି ଶୋଇଥିଲା, ସେଠାରେ ପୁଚ୍ଛ ମେଲିଇ ଠିଆ ହୋଇଗଲା ଗୋଟିଏ ସୁନ୍ଦର ମୟୂର । ତା ପରଗୁଡ଼ିକରେ ଫୁଟି ଉଠିଲା ବିଚିତ୍ର ରଙ୍ଗର ଶହେଟି ଉଜ୍ଜ୍ୱଳ ଆଖି । ସେଇଦିନଠାରୁ ମୟୂର ହେଲା ଜୁନୋ ଦେବୀଙ୍କ ପ୍ରହରୀ ।'

ଗପଟି ଶେଷ କରି ସ୍ୱପ୍ନ-ମୟୂର ମତେ କହିଲା—ଆଲୋକ, ବର୍ତ୍ତମାନ ତୁ ବୁଝିପାରୁଥିବୁ ଆମ 'ଚନ୍ଦ୍ରିକାଗୁଡ଼ାକ ଅସୁରର ଅମଙ୍ଗଳ ଆଖି' ଏ କଥାଟା କେଉଁଠୁ ଆସିଲା । ସେ ଯାହା ହେଉ, ଆମେ ପୃଥିବୀକୁ କିପରି ଆସିଲୁ ସେ ବିଷୟରେ ରୋମ ଓ ଗ୍ରୀସ୍ର ପୁରାଣମାନଙ୍କରେ ଯେଉଁ ଗପଟି ଅଛି, ତତେ କହିଲି । ଆଜି ସେତିକି ଥାଉ । ରାତି ପାହି ଆସିଲାଣି ।

ମୁଁ କହିଲି, 'ତୁ ମୋ ଭଉଣୀକୁ କାହିଁକି ସ୍ୱପ୍ନରେ ଦେଖା ଦେଉନାହୁଁ ? ସେ ମନଦୁଃଖ କରୁଛି ।'

'ସେ କଣ ଏତେ ଲମ୍ବା ଗପ ମନେ ରଖିପାରିବ ? ଆଚ୍ଛା ହଉ, ସେ ଯଦି ମନକଷ୍ଟ କରୁଛି, ମୁଁ ତାକୁ ଛୋଟ ଛୋଟ ଗପ କହିବି ।'—ଏହା କହୁଁ କହୁଁ ସେ ଶୂନ୍ୟରେ ଉଭେଇଗଲା ।"



# ଦେବୀ ବର ଦେଲେ

ଏହାପରେ କିଛି ଦିନ ଯାଏ ଆଲୋକ ଆଉ ମୟୂରକୁ ସ୍ୱପ୍ନରେ ଦେଖିଲା ନାହିଁ । ମୟୂର କାହିଁକି ଆଉ ଆସୁନାହିଁ ବୋଲି ଆଲୋକ ଭାବି ହେଉଥାଏ । ସେଦିନ ହୋଇଥାଏ ପହିଲି ରଜ । ଘରେ ମାଆ ପୋଡ଼ପିଠା କରିଥାନ୍ତି । ଖିଆପିଆ ସାରି ଆଲୋକ ଓ ଚୁମ୍ପା ଖେଳିବା ପାଇଁ ବଗିଚାକୁ ବାହାରିଗଲେ ।

ପୁଣି ସେଇ ପୋଷା ମୟୂର ଉଡ଼ି ଆସି ତାଙ୍କ ପାଚିରି ଉପରେ ବସିଲା । ତାକୁ ଏତେ ଦିନପରେ ଦେଖି ଖୁସି ହୋଇ-ଗଲେ ଆଲୋକ ଓ ଚୁମ୍ପା । ଘରକୁ ଦଉଡ଼ିଯାଇ ଚୁମ୍ପା ନେଇ ଆସିଲା ଖଣ୍ଡେ ପିଠା । ମୟୂର ଆଗରେ ପକାଇ ଦେବାରୁ ସେ ତଳକୁ ଉଡ଼ି ଆସି ଥଣ୍ଟରେ ତାକୁ ଖଣ୍ଡ ଖଣ୍ଡ କରି ଖାଇଦେଲା ।

ତା ଆଡ଼କୁ ଚାହିଁ ଏକ ଦୃଷ୍ଟିରେ ଚାହିଁ ଚୁମ୍ପା କହିଲା, "ଭାଇ, ତମ୍ଭର ସିଲ୍କ ଶାଢ଼ୀ କଥାଟା ଗ୍ରୀକ୍ ଗପଠାରୁ ଭଲ । ମୟୂରଠାରେ ଅସୁର ଲକ୍ଷଣ କିଛି ତ ନାହିଁ ?"

ଆଲୋକ କହିଲା, "ତା ଚେହେରାରେ ସିନା ନାହିଁ, ତା ପ୍ରକୃତିରେ ଅଛି ।"

"କିପରି ?" ପଚାରିଲା ଚୁମ୍ପା ।

"ଚଢ଼େଇଟାଏ, ସାପକୁ ମାରି ଖାଇଯାଉଛି—ଏ କଣ ସହଜ କଥା ?"

"ତା ଅର୍ଥ ସେ ଖୁବ୍ ସାହସୀ ଏବଂ ବଳୁଆ । ସାପକୁ ମାରି ଖାଇଲେ ତ ଭଲ କଥା । ଅମଙ୍ଗଳ ଲକ୍ଷଣ ସେଥିରେ କଣ ଅଛି ?

ମୁଁ ଯାଉଛି ତାକୁ ଆଜ ଖଣ୍ଡେ ପିଠା ଆଣି ଦେବ । ଗୁପ୍ପା ଘରକୁ ଦଉଡ଼ ଯାଇ ଆଜ ଖଣ୍ଡେ ପିଠା ଆଣି ମୟୂରକୁ ଦେଲା ।

ତା ପରଦିନ ସକାଳ । ଗୁପ୍ପା ନିଦରୁ ଉଠିଲାମାତ୍ରେ ଧାଇଁ-ଗଲା ତା ଭାଇ ପାଖକୁ ଏବଂ ତାକୁ କହିଲା, "ଭାଇ, ମୁଁ ଆଜ ସ୍ୱପ୍ନ ଦେଖିଛି ମୟୂରକୁ ! ତୁମେ କିଛି ଦେଖିଛ ?"

ଆଲୋକ କହିଲା, "ନା । ତୁ କଣ ଦେଖିଛୁ ? କିଛି ଗପ କହିଲା ସେ ?"

"ହଁ, ବଢ଼ିଆ ଗପଟାଏ ।"

ଗୁପ୍ପା ଆରମ୍ଭ କଲା ତା ସ୍ୱପ୍ନ ଗପ—

"ମୟୂର ପୁଚ୍ଛରେ ଜୁନୋ ଅସୁରର ଶହେ ଆଖି ଖଞ୍ଜି ଦେଇଥିଲେ ବୋଲି ଯେଉଁ ଗପ ସେଦିନ କହୁଥିଲ, ତାଠାରୁ ଭଲ ଗପଟାଏ ସେ କାଲି ମତେ କହିଲା । କହୁଚି ଶୁଣ ।

ଚୀନ ଦେଶରେ ଜଣେ ଗରିବ ଲୋକ ଥିଲା । ତା ନାଁ ଟିଙ୍ଗ୍ ଲୁଙ୍ଗ୍ । ସେ ପ୍ରତିଦିନ ବଣକୁ ଯାଏ । ପଶୁପକ୍ଷୀ ଯାହା ଶିକାର କରେ, ତାକୁ ଆଣି ସହରରେ ବିକେ । ଏହିପରି ସେ ପେଟ ପୋଷେ ।

ଦିନେ ଟିଙ୍ଗ୍ ଲୁଙ୍ଗ୍ ବଣ ଭିତରେ ବୁଲି ଶିକାର ଖୋଜୁଛି, ପ୍ରବଳ ଝଡ଼ବତାସ ମାଡ଼ଆସିଲା । ଧୂଳି ଓ ପତ୍ର ଉଡ଼ି ବାଟଘାଟ ଦିଶିଲା ନାହିଁ । ସେ କିପରି ଘରକୁ ଫେରିବ ଭାବି ନ ପାରି ପ୍ରାଣବିକଳରେ ଦୌଡ଼ିବାକୁ ଲାଗିଲା । କିନ୍ତୁ ସେ ବେଶି ଦୂର ଯାଇପାରିଲା ନାହିଁ । ହଠାତ୍ ଗୋଟାଏ ଡାଳ ଭାଙ୍ଗି ପଡ଼ିଲା ତା ଉପରେ । ସେ ତଳେ ପଡ଼ିଗଲା । ଉଠିଲାବେଳକୁ ଜାଣିଲା ତାର ଦୁଇଟିଯାକ ଆଖି ଫୁଟିଯାଇଛି ।

ଚଙ୍ଗ୍ରୁଙ୍ଗ୍ର ଆଖିରୁ ରକ୍ତଧାର ବହୁଥାଏ ଏବଂ ତାକୁ ଭୀଷଣ କଷ୍ଟ ହେଉଥାଏ । ଶବ୍ଦରୁ ସେ ଜାଣିପାରିଲା ଝଡ଼ କମି ଆସିଲାଣି, ମାତ୍ର ସେ ଯିବ କୁଆଡ଼େ ? ଘରକୁ ବାଟ ପାଇବ କେମିତି ? ସେ ଅଣ୍ଡାଳ ଅଣ୍ଡାଳ ଭଙ୍ଗା ଡାଳତଳୁ ବାହାରି ଆସିଲା ଏବଂ ଗୋଟିଏ ଜାଗାରେ ବସି ରହି କାନ୍ଦିଲା ।

ସେହି ବଣରେ ମୟୂରଟିଏ ବସା କରିଥାଏ । ତାର ଗୋଟିଏ ଛୁଆ ଚଙ୍ଗ୍ରୁଙ୍ଗ୍ର କାନ୍ଦ ଶୁଣି ତା ପାଖକୁ ଯିବାକୁ ବାହାରିଲା । ତା ମାଆ ତାକୁ ପଛରୁ ଡାକ ପଚାରିଲା, "କୁଆଡ଼େ ଯାଉଚୁ ?"

ଛୁଆ ମୟୂର କହିଲା, "ମୁଁ ଯାଉଚି ସେ ମଣିଷ ପାଖକୁ । ସେ କାହିଁକି କାନ୍ଦୁଚି ଦେଖିବି ।"

ମାଆ କହିଲା, "ତା କାନ୍ଦରୁ ଆମକୁ କଣ ମିଳିବ ? ମଣିଷମାନେ ଆମର ଶତ୍ରୁ । ସେମାନେ ଆମକୁ ବଣରୁ ଧରି ନେଇ-ଯାନ୍ତି, ପଞ୍ଜୁରୀ ଭିତରେ ରଖନ୍ତି ଏବଂ ଆମକୁ ମାରି ମାଂସ ଖାନ୍ତି । ତା ପାଖକୁ ଯାଆନା ।"

କିନ୍ତୁ ଛୁଆପକ୍ଷୀଟି ମାଆ କଥା ଶୁଣିଲା ନାହିଁ । କହିଲା, "ଶତ୍ରୁ ହେଲେ ସୁଦ୍ଧା ସେ ବିପଦରେ ପଡ଼ିଚି । ତାକୁ ସାହାଯ୍ୟ କଲେ ଧର୍ମ ହେବ ।" ଏହା କହି ସେ ଅନ୍ଧ ଶିକାରୀ ପାଖକୁ ଗଲା ।

ଚଙ୍ଗ୍ରୁଙ୍ଗ୍ର ଅବସ୍ଥା ଦେଖି ମୟୂର ଛୁଆ ମନରେ ଦୟା ହେଲା । ସେ ବଣରୁ କିଛି ମିଠା ଫଳ ଆଣି ତାକୁ ଖାଇବାକୁ ଦେଲା । କିନ୍ତୁ ତାକୁ ବାଟ ନ ଦିଶିଲେ ସେ ତା ଘରକୁ ଯିବ କେମିତି ? ଅନ୍ୟ କିଛି ଉପାୟ ନ ଦେଖି ସେ କଣ୍ଟାଟିଏ ଆଣି ନିଜର ଗୋଟିଏ ଆଖି ଖୋଳିଦେଲା ଏବଂ ତାକୁ ନେଇ ଶିକାରୀ ଆଖିରେ ଲଗାଇଦେଲା । ତା'ପରେ ବଣରୁ ଗୋଟିଏ ଔଷଧ ଗଛର ପତ୍ର ଆଣି ତାର ରସକୁ ଚଙ୍ଗ୍ରୁଙ୍ଗ୍ ଆଖିରେ ଚିପୁଡ଼ି ଦେଲା ।

ସାଙ୍ଗେ ସାଙ୍ଗେ ସେ ଶିକାରୀ ଗୋଟିଏ ଆଖିରେ ଦେଖିପାରିଲା । କିନ୍ତୁ ତାର ଉପକାରୀ ମୟୂର ଛୁଆଟିକୁ ଧନ୍ୟବାଦ ଦେବ କଣ, ତାର ଅନ୍ୟ ଆଖିଟି ଖୋଳି ଆଣି ନିଜର ଫୁଟା ଆଖି ଜାଗାରେ ଲଗାଇଦେଲା । ତାପରେ ସେ ମୟୂର ଛୁଆକୁ ପଚାରିଲା, "ତୁ ଯେଉଁ ପତ୍ରର ରସ ମୋ ଆଖିରେ ଚିପୁଡ଼ିଥିଲୁ, ତାହା ଦେଖାଇ ଦେ । ନୋହିଲେ ତୋତେ ମାରିଦେବି ।" କିନ୍ତୁ ସେ ବା କେମିତି ଔଷଧ ଗଛ ଦେଖାଇବ ? ତାର ତ ଦୁଇଟିଯାକ ଆଖି ଫୁଟିଯାଇଛି । ଯନ୍ତ୍ରଣାରେ ଛଟପଟ ହୋଇ ମୟୂର ଛୁଆଟି ବିଚରା ସେଇଠି ମରିଗଲା ।

ସ୍ୱାହୋ ଦେବୀ ସ୍ୱର୍ଗରେ ଥାଇ ଏ ସବୁ ଘଟଣା ଦେଖୁଥିଲେ । ମୟୂର ଛୁଆର କଷ୍ଟ ଦେଖି ସେ ଆଉ ସମ୍ଭାଳି ପାରିଲେ ନାହିଁ । ସ୍ୱର୍ଗରୁ ଓହ୍ଲାଇ ଆସି ତା ପାଖରେ ପହଞ୍ଚିଲେ । ତା ଦେହରେ ହାତ ବୁଲାଇ ଦେବାରୁ ସେ ବଞ୍ଚିଉଠିଲା । ଦେବୀ ତାକୁ କହିଲେ, "ମୁଁ ତୋର ଆଚରଣ ଦେଖି ବହୁତ ସନ୍ତୁଷ୍ଟ ହୋଇଛି । ପରର ଉପକାର କରିବାକୁ ଯାଇ ତୁ ଜୀବନ ଦେଇଛୁ । ଯେଉଁ ଆଖି ଦାନ କରି ତୁ ଶତ୍ରୁର ଜୀବନ ରଖିଛୁ, ମୁଁ ତୋତେ ସେହିଭଳି ଶହ ଶହ ଆଖି ଦେବି । ସେଗୁଡ଼ିକ ତୋ ଦେହର ଶୋଭା ବଢ଼ାଇବ ଏବଂ ତୁ ହେବୁ ପୃଥିବୀରେ ସବୁଠାରୁ ସୁନ୍ଦର ପକ୍ଷୀ ।"

ଦେବୀ ଏତିକି କହି ଅଦୃଶ୍ୟ ହୋଇଗଲେ ।"

ଗପଟି ଶେଷ କରି ସ୍ୱପ୍ନ-ମୟୂର ମତେ କହିଲା, "ସେହି ଦିନଠାରୁ ଆମ ଦେହରେ ଏଡ଼େ ସୁନ୍ଦର ଚନ୍ଦ୍ରିକା ହେଲା ବୋଲି ଚୀନ ଦେଶର ଲୋକମାନେ ମନେ କରନ୍ତି । ତୁ ଏ ଗପଟିକୁ ମନେ ରଖି ତୋ ଭାଇକୁ କହିବୁ ।" ସେ ଏତିକି କହି ସାରିଛି, ମୋ ନିଦ ଭାଙ୍ଗିଗଲା ।



# ମୟୂରଧ୍ୱଜ ରାଜବଂଶ

ଏଥର ଠିକ୍ ପରଦିନ ଆଲୋକ ପୁଣି ଦେଖିଲା ଏକ ସ୍ୱପ୍ନ । ସେଥିରେ ମୟୂର ତାକୁ କହୁଛି—"ଆଲୋକ, ତୁ ମତେ ଖୁବ୍ ଭଲ ପାଉ ବୋଲି ଭିନ୍ନ ଭିନ୍ନ ଦେଶର ମୟୂର ଗପ ମୁଁ ତତେ କହୁଛି । ତୋ ଭଉଣୀକୁ କାଲି ଯେଉଁ ଗପଟି କହିଥିଲି, ତୁ ଶୁଣିଛୁ ?"

"ହଁ, ଚୀନ ଦେଶର ଗପଟି ସେ ମତେ କହୁଥିଲା ।"

ମୟୂର କହିଲା, "ପ୍ରକୃତରେ ପୃଥିବୀର ଏଇ ପୂର୍ବପଟ ଦେଶମାନଙ୍କରେ ଆମର ଜନ୍ମ । ଆଫ୍ରିକାର କଙ୍ଗୋ ଛଡ଼ା ପୃଥିବୀର ଅନ୍ୟ କୌଣସି ପଶ୍ଚିମପଟ ଦେଶରେ ମୟୂର ଦେଖାଯାନ୍ତି ନାହିଁ । ଭାରତ, ଶ୍ରୀଲଙ୍କା, ବ୍ରହ୍ମଦେଶ, ଜାଭା, ମାଲୟ, ଇଣ୍ଡୋନେସିଆ ଏବଂ ଚୀନ ପ୍ରଭୃତି ଦେଶରେ ସେଥିପାଇଁ ଆମେ ବେଶି ଆଦର ପାଉଁ । ଚୀନରେ ନିୟମ ଅଛି, ଯେଉଁ ରାଜକର୍ମଚାରୀ ଭଲ କାମ କରନ୍ତି, ତାଙ୍କୁ ମୟୂର ପୁଚ୍ଛ ଦ୍ୱାରା ସମ୍ମାନିତ କରାଯାଏ ।

ପଞ୍ଜାବର ଲୋକମାନେ ଆମ ପରକୁ ନିଆଁରେ ସେକି ସାଇତି ରଖିଥାନ୍ତି । ସେମାନଙ୍କର ବିଶ୍ୱାସ, ଏହା ସାପ ବିଷ ନାଶ କରେ । କଳକଲମ ତିଆରି ହେବାପୂର୍ବରୁ ଅନେକ ଲୋକ ମୟୂର ପରକୁ କାଟି କଲମରୂପେ ବ୍ୟବହାର କରୁଥିଲେ । ତୋ ଅଜା ଓ ଜେଜେବାପା ହୁଏତ ତାଙ୍କ ପିଲାଦିନେ ସେଥିରେ ଲେଖିଥିବେ । ମୟୂର ମାଂସ ପିଲାଙ୍କ ରୋଗର ଔଷଧ । ଆମ ହାଡ଼କୁ ସୁନା ଛୁଆଣି କରି ଡାହାଣ ହାତରେ ବାନ୍ଧିଲେ ମନୁଷ୍ୟର ଚେହେରା ସୁନ୍ଦର ହୁଏ ବୋଲି କେତେକ ଲୋକ ବିଶ୍ୱାସ କରନ୍ତି । ଜାଭାର ମୁସଲମାନମାନେ

କହନ୍ତି ମୟୂର ସ୍ୱର୍ଗରେ ଦ୍ୱାରପାଳ ଥିଲା । ସଇତାନ ସ୍ୱର୍ଗ ଭିତରକୁ ପଶିବାକୁ ଚେଷ୍ଟା କରିବାରୁ ସେ ତାକୁ ଖାଇଦେଲା ।



ଦିଲ୍ଲୀର ମୋଗଲ ସମ୍ରାଟ ଶାହାଜାହାନ ଯେଉଁ ବହୁମୂଲ୍ୟ ମୟୂର ସିଂହାସନ ତିଆରି କରାଇଥିଲେ, ତାହା ମଧ୍ୟ ଆମର ଗୌରବ ବଢ଼ାଇ-ଦେଇଥିଲା । ସେହି ସିଂହା-ସନରେ ବାରଟି ସ୍ତମ୍ଭ ଥିଲା । ପ୍ରତି ସ୍ତମ୍ଭ ଉପରେ ଗୋଟିଏ ଗୋଟିଏ ମୁକ୍ତାଖଚିତ ବୃକ୍ଷ ଥିଲା ଏବଂ ପ୍ରତ୍ୟେକ ବୃକ୍ଷର ଉଭୟ ପାର୍ଶ୍ୱରେ ଦୁଇଟି ଲେଖାଏଁ ମୟୂର ମୂର୍ତ୍ତି ଶୋଭା ପାଉଥିଲେ । ସେହି ମୂର୍ତ୍ତିର ସୁନା ପରଗୁଡ଼ିକରେ ମୂଲ୍ୟବାନ୍ ମଣିମୁକ୍ତା ଖଞ୍ଜା ଯାଇଥିଲା । ପାରସ୍ୟର ନାଦିରସାହ ଭାରତ ଆକ୍ରମଣ କଲାବେଳେ ୧୭୩୯ ଖ୍ରୀ: ରେ ତାହାକୁ ନେଇଯାଇଥିଲେ ।

ହିନ୍ଦୁମାନେ ଆମକୁ ସବୁଠାରୁ ଶ୍ରେଷ୍ଠ ମର୍ଯ୍ୟାଦା ଦେଇ-ଅଛନ୍ତି । ଭଗବାନ ଶ୍ରୀକୃଷ୍ଣଙ୍କ ମୁଣ୍ଡରେ ମୟୂର ଶୋଭା ପାଉଛି । ଏହାଠାରୁ ବଳି ଆମର ଅଧିକ ସମ୍ମାନ କଣ ହୋଇପାରେ ? ପୁଣି ମୟୂରକୁ କାର୍ତ୍ତିକେୟଙ୍କର ବାହନରୂପେ ସେମାନେ ପୂଜା କରି ଆସୁଛନ୍ତି ।

କଚ୍ଛର ଲୋକମାନେ ଏବଂ ମହାରାଷ୍ଟ୍ରର କେତେକ ଆଦିବାସୀ ମୟୂରକୁ ପବିତ୍ର ମନେ କରନ୍ତି ଓ ପୂଜା କରନ୍ତି । ସେଠାରେ କେହି ମୟୂର ଧରନ୍ତି ନାହିଁ କି ମାରନ୍ତି ନାହିଁ ।

ତୋ ଘର ତ ଏହି ଓଡ଼ିଶାରେ । ତୁ ଜାଣିଥିବୁ ମୟୂରଭଞ୍ଜ ଏବେ ଗୋଟିଏ ଜିଲ୍ଲା ହୋଇଛି, କିନ୍ତୁ ଇଂରେଜ ଶାସନ ଅମଳରେ ଏହା ଏକ ଦେଶୀୟ ରାଜ୍ୟ ଥିଲା । ମୟୂର ଥିଲା ସେ ରାଜବଂଶର ପ୍ରତୀକ । ତେଣୁ ସେଠାରେ ମଧ୍ୟ ମୟୂର ମାରିବା ମନା । ତୁ କେବେ ବାରିପଦା ଗଲେ ରାଜବାଟୀ ଉପରେ ଦୁଇଟି ଲମ୍ବା ମୟୂର ମୂର୍ତ୍ତି ମୁହାଁମୁହିଁ ହୋଇ ବସିଥିବାର ଏବେ ମଧ୍ୟ ଦେଖି ପାରିବୁ ।

'ମୟୂରଭଞ୍ଜରେ ମୟୂର ମାରିବା କାହିଁକି ମନା ଥିଲା ଜାଣୁ କି ?''

ଆଲୋକ ଜାଣିନାହିଁ କହିବାରୁ ମୟୂର କହିଲା, ''ଶୁଣ୍ ତେବେ ତାର କାରଣ । ପୂର୍ବେ ବାଲେଶ୍ୱର ପାଖରେ ନୃରୁ ନାମରେ ଜଣେ ରାଜା ଥିଲେ । ତାଙ୍କ ଝିଅର ନାମ ଉଷା । ସେ ଯେପରି ସୁନ୍ଦରୀ, ସେହିପରି ସାହସୀ ଥିଲା । ପିଲାଦିନୁ ବାପାଙ୍କ ସାଙ୍ଗରେ ଶିକାରକୁ ଯିବା ଫଳରେ ତାର ଭୟ ଛାଡ଼ିଗଲା । ସେକାଳରେ ବାଲେଶ୍ୱରଠାରୁ ଅଳ୍ପଦୂରରେ ମୟୂରଭଞ୍ଜ ସୀମାକୁ ଲାଗି ଅନେକ ବଣ ଥିଲା । ଉଷା ଯେତେବେଳେ ବଡ଼ ହୋଇଗଲା, ସେତେବେଳେ ଦୁଇଚାରିଜଣ ଝିଅଙ୍କୁ ସାଙ୍ଗରେ ନେଇ ସେ ଏକା ଏକା ବଣକୁ ଯାଇ ଶିକାର କଲା ।

ଝିଅର ବୟସ ହୋଇଯିବାରୁ ରାଜା ତାର ବିବାହ ଆୟୋଜନ କଲେ । କିନ୍ତୁ ଉଷା କହିଲା, 'ମୁଁ ଯେ କୌଣସି

ରାଜପୁତ୍ରଙ୍କୁ ବିବାହ ଦେବ ନାହିଁ । ଦୌଡ଼ରେ ଯେ ମୋତେ ହରାଇ ଦେଇପାରିବ, ମୁଁ ତାକୁଇ ବିଭା ହେବ ।'

ରାଜା ଏହି କଥା ସବୁ ଆଡ଼େ ଜଣାଇଦେଲେ, କିନ୍ତୁ ସେ ଆଉ ଗୋଟିଏ କଥା ଯୋଡ଼ିଦେଲେ, 'ଯେ ଦୌଡ଼ରେ ହାରିଯିବ, ତା ମୁଣ୍ଡକାଟ ହେବ ।'

ରାଜାଙ୍କ ଘୋଷଣା ଶୁଣି ଅନେକ ରାଜପୁତ୍ର ଉଷାକୁ ବିଭା ହେବାପାଇଁ ଆସିଲେ; ମାତ୍ର ସମସ୍ତେ ଦୌଡ଼ରେ ହାରିଯାଇ ପ୍ରାଣ ହରାଇଲେ ।

ରେମୁଣା ପାଖରେ ସେକାଳରେ ଏକ ଘୋର ଜଙ୍ଗଲ ଥିଲା । ଦିନେ ଉଷା ଶିକାର ଉଦ୍ଦେଶ୍ୟରେ ସେହି ବଣରେ ବୁଲୁଥିଲା । ଗୋଟାଏ ପୋଖରୀ କୂଳେ ଦୁଇଟା ବାରହା ଚରୁଥିଲେ । ତାଙ୍କୁ ଦେଖି ସେ ଶର ମାରିଲା । ଶର ବାଜିବାରୁ ଗୋଟାଏ ବାରହା ସାଙ୍ଗେ ସାଙ୍ଗେ ମରିଗଲା । ଆଉ ଗୋଟାଏ ରାଗରେ ଚମକି ଆସିଲା ଉଷା ପାଖକୁ । ଟିକିଏ ଡେରି ହୋଇଥିଲେ ସେ ଉଷାକୁ ମାରିପକାଇଥାନ୍ତା; କିନ୍ତୁ ଠିକ୍ ସେତିକିବେଳେ ଅନ୍ୟ ଦିଗରୁ ଶରଟାଏ ଆସି ତା ଦେହରେ ବାଜିବାରୁ ସେ ମଧ୍ୟ ମରି ତଳେ ପଡ଼ିଗଲା ।

ଉଷା ବାରହା ପାଖକୁ ଯାଇ ଦେଖିଲା ସେ ଶର ଫଳକରେ 'ଜୟନ୍ତ' ନାମ ଲେଖା ହୋଇଛି; କିନ୍ତୁ ସେ ଜୟନ୍ତ କିଏ ଏବଂ ସେ କେଉଁଠି ଥାଇ ଶର ମାରିଲା କିଛି ଜାଣିପାରିଲା ନାହିଁ । ସନ୍ଧ୍ୟା ହେବାରୁ ସେ ବାଧ୍ୟ ହୋଇ ଘରକୁ ଫେରିଗଲା । ସେଦିନର ଘଟଣା ଏତିକି ।

ଶିମିଳପାଳ ପର୍ବତ ନିକଟରେ ବାହନପତି ନାମରେ ଆଉ ଜଣେ ରାଜା ଥିଲେ । ତାଙ୍କ ପୁଅର ନାମ ଜୟନ୍ତ । ଉଷାକୁ ସେଇ ରାଜକୁମାର ସେଦିନ ବାରିହା ଆକ୍ରମଣରୁ ରକ୍ଷା କରିଥିଲା; କିନ୍ତୁ ଯୋଗ ଏପରି ଯେ କାହାରି ସଙ୍ଗେ କାହାରି ଭେଟ ହୋଇପାରି ନ ଥିଲା ।

ଥରେ ପରଶୁରାମଙ୍କୁ ଦେଖା କରିବାପାଇଁ କାର୍ତ୍ତିକେୟ ମହେନ୍ଦ୍ର ପର୍ବତକୁ ଯାଉଥିଲେ । ସେ ବଳଙ୍ଗ ନଈ କୂଳରେ ବିଶ୍ରାମ ନେବାପାଇଁ କିଛି ସମୟ ଅଟକିଗଲେ । ସୁବିଧା ପାଇ ତାଙ୍କ ବାହନ ମୟୂର ବଣରେ ବୁଲି ବୁଲି ଚରୁଥିଲା । ଜଣେ ବାଣୁଆ ଦେବତାଙ୍କ ବାହନକୁ ଖୁବ୍ ସୁନ୍ଦର ଦେଖି ତାକୁ ମାରିବାକୁ ବସିଲା । ସେତିକିବେଳେ ଜୟନ୍ତ ପହଞ୍ଚିଯାଇ ତାକୁ ବାଧା ଦେବାରୁ କାର୍ତ୍ତିକେୟଙ୍କ ମୟୂର ରକ୍ଷା ପାଇଲା ।

କାର୍ତ୍ତିକେୟ ଏ କଥା ଜାଣି ପାରି ଜୟନ୍ତ ଆଗକୁ ଆସି କହିଲେ, 'ମୁଁ ତୋ ଉପରେ ଖୁବ୍ ଖୁସି ହୋଇଛି । ତୁ ଯେଉଁ ବର ମାଗିବୁ, ମୁଁ ତାହା ଦେବି ।'

କାର୍ତ୍ତିକେୟଙ୍କୁ ଚିହ୍ନିପାରି ଜୟନ୍ତ ହାତ ଯୋଡ଼ି କହିଲା, 'ହେ ପ୍ରଭୁ, ଯଦି ମୋ ଉପରେ ପ୍ରସନ୍ନ ହେଲ, ମୁଁ ବିପଦରେ ଡାକିଲେ ମତେ ସାହାଯ୍ୟ କରିବ ।'

'ତଥାସ୍ତୁ' କହି କାର୍ତ୍ତିକେୟ ତାଙ୍କ ବାହନରେ ବସି ଚାଲିଗଲେ । ସେତିକିବେଳେ ତାଙ୍କ ବାହନ ପୁଚ୍ଛରୁ ଗୋଟିଏ ଚନ୍ଦ୍ରିକା ଖସିପଡ଼ିଲା । ଜୟନ୍ତ ତାକୁ ଗୋଟାଇ ନେଇ ରାଜାଙ୍କୁ ଦେଲା । ରାଜା ତାକୁ ନିଜ ମୁକୁଟରେ ଖୋସିଲେ । ସେହିଦିନଠାରୁ ତାଙ୍କ ଉପାଧି ହେଲା 'ମୟୂରଧ୍ୱଜ' ଏବଂ ତାଙ୍କ ରାଜ୍ୟରେ ମୟୂର ମାରିବା ନିଷେଧ କରାଗଲା ।

'କାର୍ତ୍ତିକେୟଙ୍କଠାରୁ ବର ପାଇ ଊଷା ସ୍ୱୟମ୍ବରରେ ଯୋଗ ଦେବାପାଇଁ ଜୟନ୍ତର ସାହସ ହେଲା । ସେ ତା ବାପାଙ୍କ ଅନୁମତି ନେଇ ଊଷା ସଙ୍ଗେ ଦୌଡ଼ିବ ବୋଲି ନୁରୁରାଜାଙ୍କ ପାଖକୁ ଖବର ଦେଲା । ନୁରୁ ତା ପ୍ରସ୍ତାବରେ ରାଜି ହୋଇ ଦୌଡ଼ ପ୍ରତିଯୋଗିତାର ଆୟୋଜନ କଲେ ।

ନିର୍ଦ୍ଦିଷ୍ଟ ଦିନ ଊଷା ଓ ଜୟନ୍ତ ଏକ ସମୟରେ ଦୌଡ଼ିବାକୁ ଆରମ୍ଭ କଲେ । କିଛି ଦୂର ଦୌଡ଼ିବା ପରେ ଜୟନ୍ତ ଜାଣିଲା ଯେ ସେ ଊଷାକୁ ଜିଣି ପାରିବ ନାହିଁ । ଏତିକିବେଳେ ସେ କାର୍ତ୍ତିକେୟଙ୍କୁ ସ୍ମରଣ କଲା । କାର୍ତ୍ତିକେୟ ଶୂନ୍ୟରେ ରହି ଦେଖାଦେଲେ ଏବଂ ତିନୋଟି ସୁନାପଦ୍ମ ତା ହାତରେ ଦେଇ କହିଲେ, 'ଦୌଡ଼-ବେଳେ ଏହାକୁ ଗୋଟିକ ପରେ ଗୋଟିଏ ବାଟରେ ଫିଙ୍ଗିଦେବୁ ।'

ଜୟନ୍ତ ସେଇଆ କଲା । ସୁନା ଲୋଭ ଛାଡ଼ି ନ ପାରି ଊଷା ତାକୁ ଗୋଟାଇନେବାବେଳେ ତିନିଥର ଅଟକିଗଲା । ସେ ଏହିପରି ପଛେଇଯିବା ଫଳରେ ଜୟନ୍ତ ତାକୁ ଦୌଡ଼ ପ୍ରତିଯୋଗିତାରେ ଜିଣିଗଲା ।"

ଗପଟି ଶେଷ କରି ମୟୂର କହିଲା, କବିବର ରାଧାନାଥ ରାୟଙ୍କ 'ଊଷା' କାବ୍ୟରେ ଏ ଗଳ୍ପଟି ଅଛି ।"

ଏତିକିବେଳେ ଆଲୋକର ନିଦ ଭାଙ୍ଗିଗଲା । ନିଦରୁ ଉଠି ଛୁଟୁ ଆଗରେ ଊଷା ଜୟନ୍ତଙ୍କ ଦୌଡ଼ କଥା କହିଲା । ଛୁଟୁକୁ ଭାରି ଭଲ ଲାଗିଲା ସେ ଗପଟି ।



# ଉପକାରର ପ୍ରତିଦାନ

ତା ପରଦିନ ଆଲୋକ ପୁଣି ସ୍ୱପ୍ନ ଦେଖିଲା ସେ ମୟୂରକୁ । ତାକୁ ଦେଖିଲାମାତ୍ରେ ସେ ପଚାରିଲା, ରାଜ୍ୟର ନାମ କାହିଁକି ମୟୂରଭଞ୍ଜ ହେଲା, ତା' ତ କହିଲ ନାହିଁ ?"

ମୟୂର କହିଲା, "ହଁ, କହୁଛି ଶୁଣ । ମୁଁ ତ ମୟୂରଧ୍ୱଜ ରାଜାଙ୍କ କଥା କହୁଛି । ଜଣେ ଭଞ୍ଜବଂଶୀୟ ରାଜା ସେହି ମୟୂରଧ୍ୱଜ ରାଜାଙ୍କୁ ଯୁଦ୍ଧରେ ପରାସ୍ତ କରି ତାଙ୍କ ରାଜ୍ୟ ଅଧିକାର କରିନେଲେ । ସେହିଦିନଠାରୁ ରାଜ୍ୟର ନାମ ହେଲା ମୟୂରଭଞ୍ଜ । ଏ ଗୋଟିଏ ମତ । ଅନ୍ୟ ମତଟି ଭିନ୍ନ ପ୍ରକାର । ତାହା କହୁଛି ଶୁଣ୍ ।

ଆଜି ଯେଉଁଠି ମୟୂରଭଞ୍ଜ ରାଜ୍ୟ ଅଛି, ଅତି ପୂର୍ବକାଳରେ ସେଠାରେ କେହି ରାଜା ନ ଥିଲେ । ଘୋର ଅରଣ୍ୟରେ ସେ ଅଞ୍ଚଳଟା ପୂରି ରହିଥିଲା । ତା ଭିତରେ ଦେବୀ କୀଚକେଶ୍ୱରୀଙ୍କ ଆସ୍ଥାନ ଥିଲା । ବଣରେ ଥିବା ଲୋକମାନେ ତାଙ୍କୁ ପୂଜା କରୁଥିଲେ । ଦେବୀ ମଧ୍ୟ ସେମାନଙ୍କ ଇଚ୍ଛା ପୂରଣ କରୁଥିଲେ ଏବଂ ଆପଦ ବିପଦରୁ ସେମାନଙ୍କୁ ରକ୍ଷା କରୁଥିଲେ ।

ଯୁଗ ପରେ ଯୁଗ ବିତିଗଲା । କଳିଯୁଗ ଆସିବାରୁ ସବୁ ଦେବଦେବୀ ପଥର ପାଲଟିଗଲେ । କୀଚକେଶ୍ୱରୀଙ୍କର ମଧ୍ୟ ସେହି ଅବସ୍ଥା ହେଲା । ଲୋକମାନେ ଅନାଥ ହୋଇଗଲେ । ରାଜ୍ୟରେ ଗଣ୍ଡଗୋଳ ଦେଖାଦେଲା । ଏପରି ହେଲା ଯେ କେହି କାହା କଥା ମାନିଲେ ନାହିଁ । ତେଣୁ କେତେଜଣ ମୁଖିଆ ଲୋକ ଦେବୀଙ୍କ ପଥର ମୂର୍ତ୍ତି ଆଗରେ ଅଧିଆ ପଡ଼ିଲେ । କହିଲେ, 'ହେ ମା,

ଆମକୁ ଜଣେ ରଜା ଦିଅ, ଯେ ଆମ ଭଲ ମନ୍ଦ ବୁଝିବ ଓ ଦୁଷ୍ଟ ଲୋକଙ୍କୁ ଶାସନ କରିବ ।''

ଦେବୀ ସ୍ୱପ୍ନରେ କହିଲେ, ''ଦେବ-ଅଂଶୀ ନ ହେଲେ କେହି ରାଜା ହୋଇ ପାରିବ ନାହିଁ । ତେବେ ତୁମ୍ଭେମାନେ ଯଦି ଏକାନ୍ତ ଇଚ୍ଛା କରୁଛ, ମୁଁ ତାହା ପୂରଣ କରିବି । ଯେଉଁ ମୟୂର ଅଣ୍ଡାଟି ମୁଁ ତୁମକୁ ଦେଉଛି, ତାକୁ ଭାଙ୍ଗି ଦିଅ । ସେଥିରୁ ତୁମ ରାଜା ବାହାରିବେ ।'' ଦେବୀ ଏହା କହିବା ମାତ୍ରେ ସ୍ୱର୍ଗରୁ ଗୋଟିଏ ମୟୂର ଅଣ୍ଡା ପଡ଼ିଲା । ଲୋକମାନେ ଅତି ଆଗ୍ରହରେ ସେହି ଅଣ୍ଡାଟିକୁ ଭାଙ୍ଗି ଦେଲେ । ସତକୁ ସତ, ତା ଭିତରୁ ଜଣେ ଦିବ୍ୟ ସୁନ୍ଦର ଯୁବକ ବାହାରିଲେ ।

ଲୋକମାନେ ଏହି ଯୁବକଙ୍କୁ ରାଜା ବୋଲି ମାନିଲେ ଏବଂ ତାଙ୍କ ନାମ ଦେଲେ 'ଆଦିଭଞ୍ଜ' । ସେହି ରାଜାଙ୍କ ବଂଶଧରମାନେ ହେଲେ ଭଞ୍ଜବଂଶୀୟ ରାଜା । ଯେଉଁଠାରେ ଅଣ୍ଡାଟି ଭଙ୍ଗାଯାଇଥିଲା, ସେ ସ୍ଥାନରେ ଆଦିଭଞ୍ଜ ଏକ ନଅର ବସାଇଲେ । ତାର ନାମ ହେଲା 'ଭଞ୍ଜନଗର' ଏବଂ ସେ ରାଜ୍ୟର ନାମ ହେଲା 'ମୟୂରଭଞ୍ଜ' ।

ମୟୂରଭଞ୍ଜ ନାମ କାହିଁକି ହେଲା ତାହା କହିସାରି ସ୍ୱପ୍ନ-ମୟୂର କହିଲା, 'ଓଡ଼ିଶାର ବଣାଇ ରାଜ୍ୟରେ ମଧ୍ୟ ମୟୂର ଯୋଗୁ ଏକ ବିଶେଷ ଘଟଣା ଘଟିଥିଲା । ତୁ ବୋଧହୁଏ ତାହା ଜାଣି ନ ଥିବୁ । ଅନେକ ବର୍ଷ ତଳେ ବଣାଇର କୋଇଡ଼ା ଉପତ୍ୟକାର କୁଲି ଗାଆଁରେ ଗୋଟାଏ ଅସୁର ରହୁଥିଲା । ତା ନାଁ କୁଲିଲ । ତାର ସାତ ଝିଅ ଥିଲେ । ଦିନେ ସେମାନେ ବଣ ଭିତରେ ଥିବା ଏକ ପୋଖରୀରୁ ମାଛ ଧରୁଥିଲେ ।

ସାତଜଣ ଭୂୟାଁ ଯୁବକ ସେତିକିବେଳେ ସେ ବଣରେ ଶିକାର କରୁଥିଲେ । ସେମାନେ ଅସୁର ଝିଅମାନଙ୍କୁ ଦେଖି

ସେମାନଙ୍କ ପାଖକୁ ସାତଖଣ୍ଡ ଶାଢ଼ୀ ଫିଙ୍ଗିଦେଲେ । ଅସୁର ଝିଅମାନେ ଶାଢ଼ୀ ପିନ୍ଧି ଘରକୁ ଗଲେ ଏବଂ ଭୂୟାଁ ଯୁବକମାନଙ୍କୁ ଖାଇବାକୁ ନିମନ୍ତ୍ରଣ କଲେ ।

ସେମାନଙ୍କ ଭିତରୁ ଛଅଜଣ ଭୂୟାଁ ଯୁବକ ଆଗ ଅସୁର ଘରେ ପହଞ୍ଚି ଖାଇବସିଲେ । ସବା ସାନ ଭାଇ ଡେରିରେ ପହଞ୍ଚିଲା । ସେ ଦେଖିଲା ତା ଭାଇମାନେ ଅସୁର ଘରେ ଖାଉଛନ୍ତି । ଜାତି ଯିବା ଭୟରେ ସେ ତାଙ୍କ ସାଙ୍ଗେ ନ ଖାଇ ଘୋଡ଼ା ଚଢ଼ି ପଳାଇଗଲା ।



ଅସୁର ସାତ ଝିଅ ତାକୁ ଡାକି ଆଣିବା ପାଇଁ ତା ପଛେ ପଛେ ଗଲେ । ମାତ୍ର ସେ କେଉଁବାଟେ ଗଲା ସେମାନେ ଜାଣିପାରିଲେ ନାହିଁ । ଯାହା ବା ଜାଣିଥାନ୍ତେ, ବଣରୁ ଗୋଟିଏ ମୟୂର ଆସି ସବୁ ଭଣ୍ଡୁର କରିଦେଲା । ସେ ସାନ ଭାଇ ପଛେ ପଛେ ଉଡ଼ି ଘୋଡ଼ାର ଟାପୁଚିହ୍ନସବୁ ଲିଭାଇଦେବାରୁ ସେମାନେ ତାର କୌଣସି ସନ୍ଧାନ ପାଇଲେ ନାହିଁ ।

ଅସୁର ଝିଅମାନେ ବାଧ୍ୟ ହୋଇ ଘରକୁ ଫେରି ଆସିଲେ ଏବଂ ସେହି ଛଅଜଣ ଯୁବକଙ୍କୁ ବିବାହ କଲେ ।

ଅସୁର ଘରେ ବିଭା ହୋଇଥିବାରୁ ଭୂୟାଁ ଜାତିର ମୁରବିମାନେ ସେ ଛଅଜଣଙ୍କୁ ଜାତିରୁ ବାସନ୍ଦ କଲେ । ତେଣୁ ସେମାନେ ଗାଆଁ ଭିତରକୁ ନ ଆସି ସବୁଦିନ ପାଇଁ ସେଇ ବଣରେ ରହିଗଲେ ।

ଯେଉଁ ସାନଭାଇ ଅସୁର ଘରେ ନ ଖାଇ ପଳାଇ ଆସିଲା, ଭୂୟାଁମାନେ ତାକୁ ରାଜଗାଦିରେ ବସାଇଲେ । ଏହି କାରଣରୁ ବଣାଇରେ ପ୍ରତି ବର୍ଷ ଭୂୟାଁ ଦରବାର ହୁଏ ଏବଂ ବଣାଇର ପୀଠ ଦେବତା ବାଣେଶ୍ୱରଙ୍କ ମନ୍ଦିରରେ ଭୂୟାଁମାନେ ପୂଜାପୂଜି କାମ କରନ୍ତି ।

ସେଦିନ ଭୂୟାଁମାନଙ୍କର ମର୍ଯ୍ୟାଦା ରକ୍ଷା କରିଥିଲା ଗୋଟିଏ ମୟୂର । ସେ ଯଦି ଘୋଡ଼ାର ଟାପୁ ଚିହ୍ନ ଲିଭାଇ ଦେଇ ନ ଥାନ୍ତା, ତେବେ ସେ ଅସୁରଝିଅମାନେ ନିଶ୍ଚୟ ସାନଭାଇକୁ ଧରିନେଇଥାନ୍ତେ ଏବଂ ତାକୁ ଖୋଇପେଇ ତାଙ୍କର ଜାତିରେ ବାହା କରାଇ ଦେଇଥାନ୍ତେ । ଏହା ଫଳରେ ସେ ଆଜି ରାଜଗାଦି ପାଇ ପାରି ନ ଥାନ୍ତା ।'

ମୋ ନିଦ ଭାଙ୍ଗିଲାବେଳକୁ ମୟୂରର ଗପ ବୋଧହୁଏ ଶେଷ ହୋଇ ଆସିଥିଲା ।

ଗୁଡ଼ିୟା କହିଲା, "ମୟୂର ଆମକୁ ଅନେକ ଗପ କହିଲାଣି, ସେ ଯଦି ଆଜି ଥରେ ସ୍ୱପ୍ନରେ ଦେଖାଦିଏ, ତାକୁ ପଚାରିବା ସେ କାହିଁକି ମେଘ ଦେଖିଲେ ପୁଚ୍ଛ ମେଲାଇ ନାଚେ ।"



# ମେଘର ଅହଙ୍କାର

ଚରଦ୍ଧନ ମୟୂର ସ୍ୱପ୍ନରେ ଦେଖାଦେଲାମାତ୍ରେ ଆଲୋକ ତାକୁ ପଚାରିଲା, "ମେଘ ଦେଖିଲେ ତୁମେ କାହିଁକି ନାଚ ?"

ମୟୂର କହିଲା, "ହଁ, ସେ ବିଷୟରେ ମଧ୍ୟ ମୁଁ ମୋ ମା'ଆଠାରୁ ଗୋଟାଏ ଗପ ଶୁଣିଛି । ସେଇଟା ଆଗ କହିପାରେଁ, ତା'ପରେ ଆଉ ଯାହା କହିବି ।"

ମୟୂର ତା ଗପ ଆରମ୍ଭ କଲା ।

"ଯେଉଁ ଈଶ୍ୱର ସୂର୍ଯ୍ୟ, ଚନ୍ଦ୍ର, ପାଣି, ପବନ, ମେଘ ଓ ଜୀବଜନ୍ତୁ ସୃଷ୍ଟି କରିଅଛନ୍ତି, ସେ ଆମକୁ ମଧ୍ୟ ଜନ୍ମ ଦେଇଛନ୍ତି । ସେ ଯାହାକୁ ଯେଉଁ ପ୍ରକୃତି ଦେଇଛନ୍ତି, କେହି କଣ ତାହା ଛାଡ଼ିପାରିବ ?

ସେଇ ଈଶ୍ୱର ମୟୂରକୁ ପୁଚ୍ଛ ମେଲାଇ ନାଚିବାକୁ ଶିଖାଇଛନ୍ତି । କିନ୍ତୁ ମେଘ ସେ କଥା ବୁଝିଲା ନାହିଁ ।

ଥରେ ଗୋଟାଏ ମୟୂର ବଣ ଭିତରେ ମନ ଖୁସିରେ ନାଚୁଥିଲା । ତାକୁ ଦେଖି ମେଘ ଭାବିଲା, ମତେ ଥଟ୍ଟା କରି ମୟୂର ନାଚୁଛି । ସେ ରାଗରେ ଗର୍ଜନ ଛାଡ଼ି ମୟୂରକୁ କହିଲା, 'ରେ ନିର୍ଲଜ୍ଜ ମୟୂର, କେତେ ଦେଖେଇ ହଉଚୁ ତୋ ନାଚ ? ତୁ ଭାବୁଛୁ ତୋ ପୁଚ୍ଛର ନୀଳ ରଙ୍ଗ ପରି ଆଉ ବୋଧହୁଏ ଦୁନିଆଁରେ କିଛି ନାହିଁ । ମୋ ଦେହର ରଙ୍ଗଠାରୁ ତୋ ରଙ୍ଗଟା କଣ ସରସ ? ଆଚ୍ଛା ଦେଖିବି, ତୁ କେତେ ପୁଚ୍ଛ ମେଲାଇ ଏଣିକି ନାଚିବୁ ।'

କଳାହାଣ୍ଡିଆ ମେଘଟା ଆକାଶରେ ଯାହା ଘୋଟି ଆସୁଥିଲା ସେ ପବନରେ ଭାସି ଭାସି ବହୁଦୂରକୁ ଚାଲିଗଲା । ଗଲାବେଳେ ସେ ମୟୂରକୁ କହିଲା, "ଆଜି ମୁଁ ଆସିବି ଯେ ତୁ ମତେ ନାଚ ଦେଖାଇ ଥଟ୍ଟା କରିବୁ । ବର୍ଷା ପାଣି ନ ପାଇ ଯେତେବେଳେ ଗଛପତ୍ର ଶୁଖିଯିବ, ସେତିକବେଳେ ତୋ ମଜାଟା ଦେଖିବ ।"

ମୟୂର କହିଲା, "ହଉ କଣ କରୁଚୁ କର । ସମସ୍ତେ ଯଦି ମରିଯିବେ, ତେବେ ମୁଁ ଏକା ବଞ୍ଚି ରହି ଲାଭ କଣ ? କିନ୍ତୁ ଦେଖ୍, ତୋ ଯୋଗୁ ଯଦି ଜୀବମାନେ ମରିଯାନ୍ତି, ସମସ୍ତଙ୍କ ଅଭିଶାପ ତୋ ଉପରେ ପଡ଼ିବ ।"

ମେଘ କାହିଁକି ତା କଥା ଶୁଣିବ ? କିଛିଦିନ ପର୍ଯ୍ୟନ୍ତ ସେ ଆଉ ମୋଟେ ଆସିଲା ନାହିଁ । ବର୍ଷା ନ ହେବାରୁ ନଈପୋଖରୀ ଶୁଖିଗଲା । ଗଛପତ୍ର ଜଳିଗଲା । ପ୍ରାଣୀମାନେ ଛଟପଟ ହୋଇ ବର୍ଷାକୁ ଚାହିଁ ରହିଲେ ।

ମେଘ ଭାବିଲା, ମୟୂର ଏଥି ମଧ୍ୟରେ ମରିଯାଇଥିବ । ଯାଏଁ, ଏଥର ବର୍ଷା କଲେ କ୍ଷତି କଣ ?

ଏହା ଭାବି ଖଣ୍ଡେ କଳାହାଣ୍ଡିଆ ମେଘ ଆକାଶରେ ଘୋଟି-ଆସିଲା । ତାକୁ ଦେଖିଲାମାତ୍ରେ ମୟୂର ପୁଣି ଆରମ୍ଭ କରିଦେଲା ତା ନାଚ । ଏଥିରେ ମେଘର ରାଗ ଦୁଇଗୁଣ ବଢ଼ିଗଲା । ସେ ବିଚାରିଲା, ମାରିବାର ଦୁଇଟା ବାଟ ଅଛି । ପାଣି ଅଭାବରେ ମରିବେ, ବେଶି ପାଣି ହେଲେ ବି ମରିବେ । 'ଜଳ ବିହୁନେ ସୃଷ୍ଟି ନାଶ, ଜଳଗହନେ ସୃଷ୍ଟି ନାଶ' । ଏ ଉପାୟରେ ଯଦି ନ ମଲା, ତେବେ ତାକୁ ପାଣିରେ ବୁଡ଼ାଇ ମାରିଦେବି ।"

ତାପରେ ବର୍ଷା ଏତେ ପାଣି ଅଜାଡ଼ିଲା ଯେ ଚତୁର୍ଦ୍ଦିଗ ଜଳକାମୟ ହୋଇଗଲା । ଅନେକ ଜୀବଜନ୍ତୁ ସୁଅରେ ଭାସିଗଲେ, ମାତ୍ର ମୟୂର ମଲା ନାହିଁ । ସେ ପାହାଡ଼ ଉପରେ ଗୋଟିଏ ସୁବିଧା ଜାଗା ଦେଖି ରହିଗଲା ।

ମେଘ ପୁଣି ଥରେ ଆସିଲା, ଦେଖିଲା ମୟୂର ବଞ୍ଚିଛି ! ତାର ବିସ୍ମୟର ସୀମା ରହିଲା ନାହିଁ । ସେ ବର୍ତ୍ତମାନ ବୁଝିପାରିଲା, ଭଗବାନଙ୍କ ସୃଷ୍ଟିରେ ସମସ୍ତଙ୍କର ସମାନ ସ୍ଥାନ ଅଛି । ସେ ଯାହାକୁ ଜନ୍ମ ଦେଇଛନ୍ତି, ତାକୁ ଯେ କୌଣସିମତେ ରକ୍ଷା କରିବେ । ଯାହାକୁ ଯାହା କରିବାକୁ ଶିଖାଇଛନ୍ତି, ସେ ତାହା ନିଶ୍ଚୟ କରିବ ।

ଏହାପରେ ମନକୁ ବୁଝାଇ ସେ ମୟୂର ସଙ୍ଗେ ବନ୍ଧୁଭାବରେ ମିଶି ଚାଲିଲା । ଏଣିକି ଯେଉଁ ଋତୁରେ ବର୍ଷା ହେବାର କଥା, ସେତେବେଳେ ବର୍ଷା ହେଲା । ମେଘକୁ ଦେଖି ବୃକ୍ଷଲତା ଓ ପ୍ରାଣୀମାନେ ଖୁସି ହେଲେ । ମୟୂର ମଧ୍ୟ ପୁଚ୍ଛ ମେଲାଇ ଆନନ୍ଦରେ ନାଚିଲା । ପିଲାମାନେ ତାହା ଦେଖି ଗୀତ ଗାଇଲେ––

'ନୀଳ ମେଘ ଦର୍ଶନେ ଆନନ୍ଦଭରେ
ମୟୂର ନୃତ୍ୟ କରେ ଗିରିବନରେ ।'

ଏବେ ବୁଝିଲୁ ଆଲୋକ, ଆମ ନାଚର ରହସ୍ୟ ? ଆମେ ଯେ ମନ ଆନନ୍ଦରେ ନାଚୁ ଏଥିରେ ସନ୍ଦେହ ନାହିଁ । ଭଗବାନ ଆମକୁ ଯେଉଁ 'ବିଚିତ୍ର ରଙ୍ଗର ଚନ୍ଦ୍ରିକା ଦେଇଛନ୍ତି, ତାକୁ ସମସ୍ତଙ୍କୁ ଦେଖାଇଲେ ଦୋଷ କଣ ? ସେଥିପାଇଁ ପୁଚ୍ଛକୁ ପଙ୍ଖା ପରି ମେଲାଇ ଆମେ ବୁଲି ବୁଲି ନାଚୁ । ତାକୁ ଦେଖିଲେ ମୟୂରୀର ମନ ଖୁସି ହୋଇଯାଏ । ତାର ତ ପୁରୁଷ ପକ୍ଷୀ ପରି ଲମ୍ବ ପୁଚ୍ଛ ନାହିଁ । ସେଥିପାଇଁ ସେ ବେଶି ଖୁସି ହୁଏ । ଏଇଟା

ଆମ ପ୍ରକୃତି । କାହାକୁ ଥଟ୍ଟା କରିବା ବା ଚେହେରା ଦେଖାଇହେବ ଆମର ଉଦ୍ଦେଶ୍ୟ ନୁହେଁ ।

ମେଘ ଯେମିତି ପ୍ରଥମେ ଆମକୁ ଭୁଲ ବୁଝିଥିଲା, କେତେକ ଦେଶର ଲୋକମାନେ ମଧ୍ୟ ସେହିପରି ଭାବନ୍ତି । ଇଂରାଜୀ ଭାଷାରେ ଗୋଟିଏ କଥା ଅଛି 'as proud as peacock' ଅର୍ଥାତ୍ ମୟୂର ପରି ଗର୍ବୀ ।

ଆଚ୍ଛା କହିଲୁ ଆଲୋକ, ଏଇଟା ଅନ୍ୟାୟ କଥା ନୁହେଁ କି ? ସେମାନେ ଯଦି କହିବେ 'ଲକ୍ଷ୍ମୀପରି କୋମଳ', 'ବରଫପରି ଧଳା', 'ସିଂହପରି ସାହସୀ' ଅଥଚ 'ମୟୂରପରି ଗର୍ବୀ', ତେବେ ଏଇଟା ଆମକୁ ବାଧିବ ନାହିଁ ? ଭଗବାନ ଆମକୁ ସୁନ୍ଦର ରୂପ ଦେଇଛନ୍ତି ଓ ନାଚିବାକୁ ଶିଖାଇଛନ୍ତି । ତେଣୁ ଏଥିରେ ଗର୍ବର କଥା ରହିଲା କେଉଁଠି ?

ତୁମେ ଏସପ୍‌ଙ୍କ ଗଳ୍ପ ପଢ଼ିଚ ?

ମୁଁ ପଢ଼ିନାହିଁ କହିବାରୁ ସେ ଆରମ୍ଭ କଲା ଆଉ ଗୋଟିଏ ଗ୍ରୀକ ଗଳ୍ପ । ଥରେ ଗୋଟାଏ ଅଣ୍ଡିରା କୁଆ ଭାବିଲା ତା ରୂପଟା କଳା କଟିକଟି ହୋଇ ଅସୁନ୍ଦର ଦିଶୁଛି; ତେଣୁ କେହି ତା ଆଡ଼କୁ ଚାହୁଁନାହାନ୍ତି । ସେ ତା ଚେହେରାଟାକୁ ସୁନ୍ଦର କରିଦେଲେ ସମସ୍ତେ ତାକୁ ଚାହିଁବେ । କିନ୍ତୁ କେମିତି ସୁନ୍ଦର କରିବ ? ଭାବି ଭାବି ସେ ବଣରୁ କେତେଗୋଟି ମୟୂର ଚନ୍ଦ୍ରିକା ଗୋଟାଇ ଆଣିଲା । ତାକୁ ନିଜ ଡେଣା ପଛରେ ଖୋସି ବାନ୍ଧିଦେଲା । ତାପରେ ସେ ସିଧା ଚାଲିଗଲା ମୟୂର ଦଳ ପାଖକୁ । ସେମାନେ ତା ଫିସାଦ ବୁଝିପାରି ତାକୁ ମାରି ଗୋଡ଼େଇଲେ । ତେଣୁ ବାଧ୍ୟ ହୋଇ ସେ ତାଙ୍କ ପାଖରୁ ପଳାଇ ଆସିଲା ।

ପୁଣି ସେ ଭାବିଲା, ମୟୂରମାନେ ସିନା ତାକୁ ଦଳରେ ମିଶାଇଲେ ନାହିଁ; ସେ ଏଥର ତା ନିଜ ଦଳରେ ମିଶିବ । ତା ସୁନ୍ଦର ରୂପ ଦେଖିଲେ ସେମାନେ ତାକୁ ବହୁତ ଖାତିର କରିବେ ।

କୁଆମାନଙ୍କ ପାଖକୁ ଯାଇ ସେ ଯେମିତି ଢେଇଁ ଢେଇଁ ବୁଲୁଛି, ସେମାନେ କା କା ରଡ଼ି ଛାଡ଼ି ତାକୁ ବେଢ଼ିଗଲେ ଏବଂ ଖୁମ୍ପି ଖୁମ୍ପି ଦରମରା କରିଦେଲେ । ବିଚରା ପ୍ରାଣ ନେଇ ସେଠାରୁ ପଳାଇଲା ।

ଆମେ ଯଦି ନିଜ ଗୁଣରେ ବଡ଼ ନ ହୋଇ ଏଇ କୁଆପରି ଗର୍ବ କରୁଥାଉ, ତେବେ ସିନା ଆମକୁ ଗର୍ବୀ କହନ୍ତି । ଛାଡ଼, ଯେ ଯାହା କହିବ କହୁ, ଆମେ ଆମର କର୍ତ୍ତବ୍ୟ କରିଯାଉଛୁ ।

ହଉ, ଆଜି ଏତିକି ଥାଉ । ମୁଁ ଯାଉଛି ।"

ଆଲୋକର ସ୍ୱପ୍ନ ଭାଙ୍ଗିଗଲା । ସେ ନିଦରୁ ଉଠି ଛୁଆ ଆଗରେ ପୂର୍ବ ରାତିର କଥା ସବୁ କହିବସିଲା ।



# ଗୋଡ଼ଚୋରଣୀ

ଦୁଇ ତିନ ଦିନ ପରେ ଗୁପ୍ପା ଦେଖିଲା ଏକ ସ୍ୱପ୍ନ । ତାଙ୍କର ସେଇ ଶିକ୍ଷା ମୟୂରଟି ତାକୁ ସ୍ୱପ୍ନରେ ଦେଖା ଦେଇ କହିଲା, "ମୁଁ ଯେଉଁ ଗପସବୁ ତୋ ଭାଇକୁ କହିଛି, ତୁ ତ ସେ ସବୁ ଶୁଣିଥିବୁ ?"

ଗୁପ୍ପା କହିଲା, "ହଁ" ।

"ଆମ ସାଙ୍ଗେ ବାଦ କରି କୁଆର ଯେଉଁ ଅବସ୍ଥା ହେଲା, ତା ତ ଜାଣିଛୁ । କିନ୍ତୁ ଆଜି ଗୋଟିଏ ପକ୍ଷୀ ଆମକୁ ଜିଣିଗଲା । ପଞ୍ଜାବର ଆଈବୁଢ଼ୀମାନେ ଏ ଗପଟି ତାଙ୍କ ନାତିନାତୁଣୀମାନଙ୍କୁ କହନ୍ତି ।

ମୁଁ ଗପଟି କହୁଛି ଶୁଣ୍ ।

ଦିନେ ମୟୂର ପୁଚ୍ଛ ମେଲାଇ ବଣ ଭିତରେ ନାଚୁଥିଲା । ଶାଗୀ ଗଛ ଡାଳରେ ବସି ଏକ ଲୟରେ ତାକୁ ଚାହିଁଥାଏ । ତାର ମନ ହେଲା ସେ କିପରି ମୟୂରପରି ସୁନ୍ଦର ହୁଅନ୍ତା, ଡେଣା ମେଲାଇ ନାଚନ୍ତା । କିନ୍ତୁ ତା କିପରି ହେବ ? ମୟୂର ଦେହରୁ କେଇଟା ପର ଅଣ୍ଟରେ ଟିକିଏ ଆଣି ନିଜ ଦେହରେ ଲଗାଇ ଦେଲେ ଗୋଟାଏ ପ୍ରକାର ଅବଶ୍ୟ ହୁଅନ୍ତା; କିନ୍ତୁ ମୟୂର ପାଖକୁ ଗଲେ ସେ ତ ମାରି ଗୋଡ଼େଇବ । ଭାବି ଭାବି ସେ ସ୍ଥିର କଲା, ମାଙ୍କଡ଼କୁ ଏ ବିଷୟ ପଚାରିବ । ସେ ଅବା କିଛି ବୁଦ୍ଧି ବତେଇପାରେ ।

ପାଖ ଡାଳରେ ମାଙ୍କଡ଼ ବସି ତା ଛୁଆକୁ ଗେଲ କରୁଥାଏ । ଶାଗୀ ତାକୁ ପଚାରିଲା, "ମଉସା, ମଣିଷପରି ହାତ, ଗୋଡ଼, ମୁହଁ ତୁମେ କେମିତି ପାଇଲ ?"

ମାର୍କଣ୍ଡ କହିଲା, "ବ୍ରହ୍ମାଙ୍କୁ ସ୍ତୁତି କରିବାରୁ ସେ ସନ୍ତୁଷ୍ଟ ହୋଇ ବର ଦେଲେ । ତାଙ୍କ ଦୟାରୁ ମୁଁ ମଣିଷ ଭଳି ହାତ, ଗୋଡ଼, ମୁହଁ ଆଦି ପାଇଛି ।"

ଶାଗି କ ଆଉ ଥୟ ଧରେ ? ଉଡ଼ି ଉଡ଼ି ଦେଉଳ ବେଢ଼ା ଭିତରକୁ ଚାଲିଗଲା । ଠାକୁର ପୂଜା ସାରି ପୂଜାରୀ ସେତିକବେଳକୁ ଘରକୁ ଫେରୁଥିଲେ । ଶାଗି ତାଙ୍କୁ ପଚାରିଲା, "ଗୋସେଇଁ, ବ୍ରହ୍ମାଙ୍କୁ କେଉଁଠି ପାଇବ ?"

ପୂଜାରୀ କହିଲା, "ବ୍ରହ୍ମା ? ସେ ତ ସ୍ୱର୍ଗରେ । ସୃଷ୍ଟି କାମ ଶେଷ କରି ହାଲିଆ ହୋଇ ଶୋଇ ପଡ଼ିଛନ୍ତି । ତାଙ୍କ ଦେଖା ତୁ କେମିତି ପାଇବୁ ? ତେବେ ତାଙ୍କ ପୁଅ ନାରଦ ପ୍ରତି ମଙ୍ଗଳବାର ଦିନ ଏ ପୃଥିବୀକୁ ଆସନ୍ତି । ତାଙ୍କୁ ଦେଖା କରି ତୋ ଦୁଃଖ ଜଣା । ସେ ଅବା କିଛି କରିପାରନ୍ତି ।"

ଶାଗି ଅପେକ୍ଷା କରି ରହିଲା ସେହି ଦିନକୁ । ନାରଦମୁନି ମଙ୍ଗଳବାର ଦିନ ମନ୍ଦିରକୁ ଆସିଲେ । ଶାଗି ତାଙ୍କୁ ଦେଖା କରି ନିଜର ଦୁଃଖ ଜଣାଇଲା । ନାରଦ ଭାବିଲେ, ଶାଗିଟା ସତରେ ବଡ଼ ଅସୁନ୍ଦର ଦେଖାଯାଉଛି । କିନ୍ତୁ ମୟୂରକୁ ନ ପଚାରି କିଛି କରିବା ଠିକ୍ ହେବ ନାହିଁ । ତା ଛଡ଼ା ଗୋଟାଏ ନୂଆ ଜୀବ ସୃଷ୍ଟି କରିବା କ୍ଷମତା ତ ତାଙ୍କର ନାହିଁ । ସେ କେବଳ ଗୋଟାଏ କିଛି ଅଙ୍ଗ ବଦଳାବଦଳି କରିପାରନ୍ତି । ଶାଗିକୁ କହିଲେ, "ଆଚ୍ଛା, ତୋ ଗୋଡ଼ ଦି'ଟା ଭାରି ଅସୁନ୍ଦର ଦିଶୁଛି । ସେ ଦୁଇଟା ମୟୂରକୁ ଦେଇ ତା ହଳଦିଆ ଗୋଡ଼ ଦି'ଟା ଯଦି ତୋତେ ଦିଆଯାଏ, କେମିତି ହେବ ?"

"ଖୁବ୍ ଭଲ ହୁଅନ୍ତା ଆଜ୍ଞା"—ଏହା କହୁଁ କହୁଁ ଶାଗୁ ସେ ବେଡ଼ା ଭିତରେ ଆନନ୍ଦରେ ପରପ୍ରେ ନାଚଗଲା ।

"ତୁ ମୟୂରକୁ ଆଗ ଏ ବିଷୟ ପଚ୍ଚର; ସେ କଣ କହୁଛି ।" ନାରଦ ଶାଗୁକୁ ଏ ପ୍ରସ୍ତାବ ଦେବାରୁ ସେ କହିଲା, "ମୁଁ ଏକଥା ତାକୁ ପଚ୍ଚରିଲେ ସେ ମତେ ଆଉ ରଖିବ ? ମାରି ଗୋଡ଼େଇବ ।"

ମୟୂର ତା ପୁଚ୍ଛ ମେଲାଇ ବଣ ଭିତରେ ଗୋଟାଏ ଖୋଲା ଜାଗାରେ ନାଚୁଥାଏ । ନାରଦ ତାକୁ ପାଖକୁ ଡାକଲେ, କନ୍ତୁ ସେ ଶୁଣିଲା ନାହିଁ । ଓଲଟି ତାଙ୍କ ଆଡ଼କୁ ପଛ କରି ନାଚିଲା । ନାରଦଙ୍କୁ ଅପମାନ ଲାଗିଲା । ସେ ରାଗିଗଲେ । ଛାର ପକ୍ଷୀଟା ତାଙ୍କୁ ଏଡ଼େ ବେଖାତିର କରୁଛି ? ତାକୁ ଉଚିତ ଶିକ୍ଷା ନ ଦେଲେ ହେବନାହିଁ । ନାରଦଙ୍କ ରାଗ ଦେଖି ଶାଗୁ ମନେ ମନେ ଖୁବ୍ ଖୁସି ହେଉଥାଏ । ସେଦିନ ତାକୁ ବୋଧଶୋଧ ଦେଇ ନାରଦ ସ୍ୱର୍ଗକୁ ଚାଲିଗଲେ ।

ସ୍ୱର୍ଗରେ ବ୍ରହ୍ମା ଗାଢ଼ ନିଦରେ ଶୋଇଥାନ୍ତି । ତେଣୁ ନାରଦ ମା' ପାର୍ବତୀ ଦେବୀଙ୍କୁ ଦେଖା କରି ସବୁ ବିଷୟ ଜଣାଇଲେ । ମାଆ କହିଲେ, "ତୁ ଯୁଆଡ଼େ ଯାଉଛୁ, ଗୋଟାଏ ଅନର୍ଥ ଲଗାଇ ଦେଇ ଆସୁଛୁ । ତାକୁ ସଜାଡ଼ୁ ସଜାଡ଼ୁ ଆମ ଦିନ ଯାଉଛି ।"

ନାରଦ କାନ୍ଦ କାନ୍ଦ ହୋଇ କହିଲେ, "ଛାର ମୟୂରଟାଏ ! ତାର ଏତେ ଗର୍ବ ଯେ ମତେ ଅପମାନ ଦେଲା ! ଡାକିଲି, ଶୁଣିଲା ନାହିଁ । ତାକୁ ଶାସ୍ତି ନ ଦେଲେ ମୋ ମୁଣ୍ଡ ରହିବ ନାହିଁ । ଶାଗୁର ଗୋଡ଼ ସଙ୍ଗେ ତା ଗୋଡ଼କୁ ଟିକିଏ ବଦଳ କରିଦିଅ । ସେତିକି ହେଲେ ମୋ ମନ ଶାନ୍ତ ହେବ ।" ପାର୍ବତୀ ଦେବୀ ବାଧ୍ୟ ହୋଇ ବ୍ରହ୍ମାଙ୍କୁ ସେ କଥା ଜଣାଇଲେ । ବ୍ରହ୍ମା ନିଦବାଉଳାରେ କହିଦେଲେ "ହଉ" ।

ଶାଗ୍ସି ଏଣେ ଦିନ ଗଣୁଥାଏ । ମଙ୍ଗଳବାର ଦିନ ନାରଦ ପୁଣି ମର୍ତ୍ତ୍ୟକୁ ଆସିଲେ । ସେ ଯେମିତ ଆସି ପୃଥିବୀରେ ପାଦ ଦେଇଛନ୍ତି, ଦେଖିଲେ ଦୁଇ ପକ୍ଷୀଙ୍କ ଗୋଡ଼ ବଦଳ ହୋଇଯାଇଛି । ଶାଗ୍ସିର ଗୋଡ଼ ହୋଇଛି ହଳଦିଆ ଓ ଚକ୍‌କଣ, ମୟୂର ଗୋଡ଼ ଦିଶୁଛି ପୂର୍ବର ଶାଗ୍ସି ଗୋଡ଼ପରି ମାଟିଆ ଓ ଅସୁନ୍ଦର । ନାରଦ ଭାବିଲେ, 'ମୟୂର ଏଥର ଶିକ୍ଷିବ ମୁଁ କିଏ । କିନ୍ତୁ ତାର ଦୋଷ ତୁଳନାରେ ଦଣ୍ଡ ବୋଧହୁଏ ବେଶି ହୋଇଗଲା । ହଉ, ତାକୁ ଆଉ ଗୋଟାଏ ବାଟରେ ସନ୍ତୁଷ୍ଟ କରିଦେଲେ ହେବ । ତା ଲୁହକୁ କରିଦେବି ମୁକ୍ତାପରି ସୁନ୍ଦର ।'

ସେତିକ କରିଦେଇ ନାରଦ ସ୍ୱର୍ଗକୁ ଚାଲିଗଲେ । କିନ୍ତୁ ସବୁଦିନ ପାଇଁ କଳିର ମଞ୍ଜିଟି ପୋତିଦେଇଗଲେ । ମୟୂର ଯେତେବେଳେ ନାଚ ବନ୍ଦ କରି ମନ ଦୁଃଖରେ ତା ଗୋଡ଼କୁ ଚାହେଁ, ଶାଗ୍ସି ସେତିକବେଳେ ତା ଉପରପଟେ ଉଡ଼ି ଉଡ଼ି ତାକୁ ଚିଡ଼ାଇଲେଇ କହେ, "ଗର୍ବର ଫଳ ପାଇଲୁ ?"

ମୟୂର ତାର ବା କଣ କରିପାରିବ ? ଦେବତାଙ୍କ କୂଟକୁ ବଳ କାହାର ? କିନ୍ତୁ ମନ ତ ତାର ସମ୍ଭାଳ ହୁଏ ନାହିଁ । ରାଗରେ ଶାଗ୍ସି ଆଡ଼କୁ ଗୋଡ଼େଇ ଯାଇ ତାକୁ ଥଟ୍ଟା କରେ—

"କଳାବରଣୀ, ଗୋଡ଼ଚୋରୁଣୀ,
ଲାଜ ନାହିଁ ତୋତେ ଦେଖାଉ ଠାଣି ?"

ଗପଟି ଶେଷ କରି ସ୍ୱପ୍ନ-ମୟୂର କହିଲା, "ସେହି ଦିନଠାରୁ ଶାଗ୍ସି ସାଙ୍ଗେ ଆମର ସବୁଦିନେ ଅପଡ଼ ।" ଏତିକ କହି ସାରି ସେ ଅନ୍ଧାରରେ ମିଶିଗଲା ।

ସକାଳ ହେଲାରୁ ଗୁପ୍ପା ତା ଭାଇ ଆଗରେ ଏ ଗପଟି କହିଲା ।



# ଜାତୀୟ ପକ୍ଷୀର ଗୌରବ

ଏହାପରେ ତିନ ବୃନ୍ଦାବନ ପର୍ଯ୍ୟନ୍ତ ସେ ମୟୂର ଆଉ ସ୍ୱପ୍ନରେ କାହାକୁ ଦେଖାଦେଲା ନାହିଁ ।

ଆଲୋକର ସାହିତ୍ୟ ବହିରେ ଥିବା 'ଜାତୀୟ ପକ୍ଷୀ' ବୋଲି ଗୋଟିଏ ପଦ୍ୟ ଦିନେ ଶିକ୍ଷକ ପଢ଼ାଇଲେ । ସେତେବେଳେ ସେ ଭାବୁଥିଲା ସ୍ୱପ୍ନ-ମୟୂର ଯଦି ଶ୍ରେଣୀରେ ତାଙ୍କ ପାଖରେ ବସି ଏ ପଦ୍ୟ ଶୁଣୁଥାନ୍ତା, ତେବେ କେଡ଼େ ମଜା ହୁଅନ୍ତା ! କାର୍ତ୍ତିକେୟଙ୍କ ଅନୁଗ୍ରହରୁ ସେ ତ ଆମ ଭାଷା ବୁଝିବାର ଶକ୍ତି ପାଇଛି; ଅସୁବିଧା ହୁଅନ୍ତା କାହିଁକି ?

ଯୋଗକୁ ସେଇ ଦିନ ରାତିରେ ସେ ଆଲୋକକୁ ସ୍ୱପ୍ନରେ ଦେଖାଦେଲା । ତାକୁ ଦେଖି ଦେଖି ଆଲୋକ କହିଲା, "ତୁ ଆମକୁ ଅନେକ ଗପ କହିଲୁଣି । ମୁଁ ଆଜି ତତେ ଗୋଟିଏ ନୂଆ କଥା କହିବି ।"

ମୟୂର ପଚାରିଲା, "କି କଥା ?"

"ଆଜି ଆମ ଶ୍ରେଣୀରେ ତୁମର ବିଷୟ ପଢ଼ା ହେଉଥିଲା ।"

"କଣ ପଢ଼ା ହେଉଥିଲା ଟିକିଏ କହିଲୁ ।"

ଆଲୋକ କହିଲା, "ଜାତୀୟ ପକ୍ଷୀ ବୋଲି ଗୋଟିଏ ପଦ୍ୟ ଆମ ସାହିତ୍ୟ ବହିରେ ଅଛି । ଆମ ଦେଶ ସ୍ୱାଧୀନ ହେଲାପରେ ଆମର ଜାତୀୟ ପତାକା, ଜାତୀୟ ସଙ୍ଗୀତ, ଜାତୀୟ ପଶୁ, ଜାତୀୟ ପକ୍ଷୀ ପ୍ରଭୃତି ବଛା ଯାଇଛି । ବାଘ ଆମର ଜାତୀୟ ପଶୁ ଏବଂ ମୟୂର

ଆମ ଜାତୀୟ ପକ୍ଷୀ । ଭାରତବାସୀମାନେ ମୟୂରକୁ କେତେ ଶ୍ରଦ୍ଧା କରନ୍ତି, ଏଇଥିରୁ ଜାଣିପାରୁଥିବୁ ।''

ମୁଁ ତ ସେକଥା ପୂର୍ବରୁ ତତେ କହିସାରିଛି । ତୁମ ଲୋକଙ୍କ ଶ୍ରଦ୍ଧା ଆମେ ଭୁଲିପାରିବୁ ନାହିଁ । ଭାରତକୁ ଆମେ ଆମର ଜନ୍ମଭୂମି ମନେ କରୁ । ତୁ ଯେଉଁ ପଦ୍ୟ ପଢ଼ିଛୁ, ସେଥିରୁ ପଦେ ଦୁଇପଦ ବୋଲିଲୁ । ମୁଁ ଟିକିଏ ଶୁଣିବି ।''

ଆଲୋକ ବୋଲିଲା—

'ରୂପେ ସୁକୁମାର, ଗୁଣେ ସରସ,
ସାଧୁଜନ-ପ୍ରାଣେ ବୁଣେ ହରଷ,
ଖଳ ଜୀବ ମନେ ଆଣେ ସେ ଖିନ୍ତ,
ଦେଖାଏ ତା ଆଗେ ବଡ଼ିମା ଘିନ୍ତ,
ବିହଙ୍ଗମେ ସାର,
କେଡ଼େ ରାଜକୀୟ ଭଙ୍ଗିମା ତାର !

ଭାରତର ଯେତେ ଗୁଣ ଗରବ,
ସାହସ, ଶକତି, ମୈତ୍ରୀ, ବିଭବ
ନୃତ୍ୟ, ଗୀତ, ଶିଳ୍ପ, ରୂପ ଅତୁଳ
ସବୁ ତାହାଠାରେ ହୋଇଛି ଠୁଳ !
ସେଥିପାଇଁ କିବା,
ଜାତୀୟ ପକ୍ଷୀ ସେ, ଜାତିପ୍ରତିଭା ।'

ମୟୂର କହିଲା, ''ମୋଗଲ ସମ୍ରାଟ ଶାହାଜାହାନ ସିନା ମୟୂର ସିଂହାସନ ଗଢ଼ି ସେଥିରେ ନିଜେ ବସୁଥିଲେ, ତୁମେ ତ ଆମକୁ ରାଜ ସିଂହାସନରେ ବସାଇ ଦେଇଛ । କୋଟି କୋଟି ଭାରତବାସୀଙ୍କ ହୃଦୟରେ ଆମକୁ ସ୍ଥାନ ଦେଇଛ । ଏହା ଫଳରେ

କେବଳ ଏ ଦେଶରେ ନୁହେଁ, ସାରା ପୃଥିବୀରେ ଆମର ସମ୍ମାନ ବଢ଼ିଯାଇଛି ।”

ଆଲୋକ କହିଲା, “ଆମର ଶିକ୍ଷକ ତୁମ ବିଷୟରେ ଆଜି ଦୁଇଟି କଥା କହୁଥିଲେ । ଚିଠି ଉପରେ ଯେଉଁ ଡାକଟିକଟ ଲଗାଯାଏ, ସେଥିରେ ଅନେକ ସୁନ୍ଦର ସୁନ୍ଦର ଛବି ଥାଏ । ଦେଶର ପ୍ରସିଦ୍ଧ ନରନାରୀ, ପ୍ରଧାନ ସ୍ଥାନ ଓ କୀର୍ତ୍ତି, ଜୀବଜନ୍ତୁ, ବିଭିନ୍ନ ପ୍ରକାର ଯାନବାହନ ଏବଂ ନାନାରଙ୍ଗର ଫୁଲର ଚିତ୍ର ସେହି ଟିକଟରେ ଛପାଯାଇଥାଏ । ଏହା ଫଳରେ ଏକ ଦେଶର ଡାକଟିକଟରେ ଯେଉଁ ଚିତ୍ର ଥାଏ, ତାହା ସେହି ଦେଶର ଲୋକେ ତ ଦେଖନ୍ତି, ପୃଥିବୀର ଅନ୍ୟାନ୍ୟ ଦେଶବାସୀ ମଧ୍ୟ ଦେଖନ୍ତି । କାରଣ ଚିଠିପତ୍ର ସବୁ ଦେଶକୁ ପଠାଯାଏ । ଭାରତ ସରକାର ତାଙ୍କର ଗୋଟିଏ ଡାକ ଟିକଟରେ ମୟୂରକୁ ସ୍ଥାନ ଦେଇଛନ୍ତି । ୧୯୭୩ ନଭେମ୍ବର ୧୪ ରୁ ୨୩ ତାରିଖ ପର୍ଯ୍ୟନ୍ତ ନୂଆଦିଲ୍ଲୀଠାରେ ଯେଉଁ ଡାକଟିକଟ ପ୍ରଦର୍ଶନୀ ହୋଇଥିଲା, ସେଥିରେ ପୃଥିବୀର ନାନାଦେଶର ଡାକଟିକଟମାନ ରଖାଯାଇଥିଲା । ଭାରତ ସରକାର ସେହି ଉପଲକ୍ଷେ ଚାରୋଟି ନୂଆ ଟିକଟ ଛପାଇଥିଲେ । ତା ମଧ୍ୟରେ ଦୁଇ ଟଙ୍କିଆ ଟିକଟଟି ଥିଲା ସବୋଚ୍ଚ ମୂଲ୍ୟର ଏବଂ ସେଥିରେ ଶୋଭାପାଉଥିଲା ଆମ ଜାତୀୟ ପକ୍ଷୀ ମୟୂରର ଛବି ।”

“ବାଃ, ଚମତ୍କାର କଥା ତ !”—ମୟୂର ମତ ଦେଲା ।

ଆଲୋକ କହିଲା, “ଆଉ ଗୋଟିଏ କଥା ଶିକ୍ଷକ କହୁଥିଲେ । ଶୁଣିଲେ ତୁମକୁ ନିଶ୍ଚୟ ଖୁସି ଲାଗିବ । ଭାରତରେ ଆମର ଏ ବର୍ଷ ଆନ୍ତର୍ଜାତିକ ଚଳଚ୍ଚିତ୍ର ଉତ୍ସବ ଅନୁଷ୍ଠିତ ହୋଇଥିଲା । ବିଭିନ୍ନ ଦେଶରୁ ଆସିଥିବା ଚିତ୍ରଗୁଡ଼ିକ ସହିତ ଆମ ଦେଶର

ଭଲ ଭଲ ଚଳଚ୍ଚିତ୍ରମାନ ପ୍ରଦର୍ଶିତ ହେଲା । ସେଥିରେ ଯେ ସର୍ବଶ୍ରେଷ୍ଠ ବିବେଚିତ ହେଲା, ତାକୁ ପୁରସ୍କାର ଦିଆଗଲା ଗୋଟିଏ ନୃତ୍ୟରତ ସ୍ୱର୍ଣ୍ଣମୟୂର ଏବଂ ଦ୍ୱିତୀୟ ଓ ତୃତୀୟ ସ୍ଥାନ ପାଇଥିବା ଚିତ୍ରକୁ ରୂପା ଓ ବ୍ରୋଞ୍ଜ ମୟୂର ଗୋଟିଏ ଗୋଟିଏ ପୁରସ୍କାର ଦିଆଗଲା ।"

ସେତେବେଳକୁ ରାତି ପାହି ଆସୁଥିଲା । ମିଆଁ ବୁଢ଼ାଘର-ଆଡ଼ୁ ଶୁଭିଲା କୁକୁଡ଼ାର ଡାକ । ଆଲୋକ ଆଖି ଖୋଲି ଦେଖେ ତ ସେ ଖଟ ଉପରେ ଶୋଇଛି । ସ୍ୱପ୍ନ-ମୟୂର ଶୂନ୍ୟରେ ମିଳାଇ-ଗଲାଣି । ଶୋଇ ଶୋଇ ସେ ମୟୂର ସଙ୍ଗେ ଯାହା କଥାବାର୍ତ୍ତା ହୋଇଥିଲା, ଗୋଟି ଗୋଟି ମନେ ପକାଇଲା । ଏତିକବେଳେ ତାର ମନେ ପଡ଼ିଲା ସେଦିନ ତାଙ୍କର ମାମୁଘରକୁ ଯିବାର କଥା । ତେଣୁ ଶୀଘ୍ର ବିଛଣାରୁ ଉଠି ସେ ମୁହଁହାତ ଧୋଇ ପକାଇଲା ଏବଂ ରୁମ୍ପୁକୁ ଡାକି ଧାଇଁଗଲା ମାଆଙ୍କ ପାଖକୁ ! ମାଆଙ୍କ କଥା ଅନୁସାରେ ଭାଇ ଭଉଣୀ ଦୁହେଁ ନିତ୍ୟକର୍ମ ଓ ଖିଆପିଆ ଶେଷ କରି ମାମୁଘରକୁ ଯିବାକୁ ପ୍ରସ୍ତୁତ ହେଲେ ।



# ଶାସ୍ତ୍ର ପୁରାଣରେ ମୟୂର

ଦଶହରା ଛୁଟିପରେ ସ୍କୁଲ ଖୋଲିବାକୁ ଆଉ ଛଅ ସାତ ଦିନ ଥାଏ । ଆଲୋକ ଓ ଗୁପ୍ନା ମାମୁଘରେ ପହଞ୍ଚିଲେ । ଦିନଯାକ ଖେଳବୁଲରେ କଟେ । ସନ୍ଧ୍ୟା ହେଲେ ଅଜାଙ୍କ ପାଖରେ ପିଲା-ମାନେ ଏକଜୁଟ ହୁଅନ୍ତି । ତାଙ୍କଠାରୁ ନାନା ପ୍ରକାର ଗପ ଶୁଣନ୍ତି । ଅଜାଙ୍କ ପିଲାଦିନର କଥା ଶୁଣିବାକୁ ଆଲୋକକୁ ଖୁବ୍ ଭଲ ଲାଗେ । ତା ଛଡ଼ା ସେ କହନ୍ତି ରାମାୟଣ, ମହାଭାରତ ଓ ପୁରାଣର କାହାଣୀମାନ ।

ଦିନେ ପଶୁପକ୍ଷୀଙ୍କ କଥା ପଡ଼ୁ ପଡ଼ୁ ଆଲୋକ କହିଲା, "ଅଜା, ତୁମେ ଜାଣ ମୟୂରକୁ ଆମର ଜାତୀୟ ପକ୍ଷୀରୂପେ କାହିଁକି ବଛାଯାଇଛି ?"



ଅଜା କହିଲେ, "ମୁଁ ସେ କଥା ଜାଣିନାହିଁ, କିନ୍ତୁ ମୟୂରକୁ ନ ବାଛି ଆଉ କାହାକୁ ବାଛିଥାନ୍ତେ ? ଏଡ଼େ ସୁନ୍ଦର ପକ୍ଷୀ ପୃଥିବୀରେ ଆଉ କେଉଁଠି ଅଛି ? କୃଷ୍ଣଙ୍କ ମୁଣ୍ଡରେ ଯାହାର ଚୂଳ ଶୋଭା ପାଏ, କାର୍ତ୍ତିକେୟଙ୍କୁ ଯେ ପିଠିରେ ବସାଇ ବୁଲାଏ, ସେ ଆମର ଜାତୀୟ ପକ୍ଷୀ ହେବ ନାହିଁ ତ ଆଉ କିଏ ହେବ ?"

ଗୁପ୍ନା ପଚାରିଲା, "ଅଜା, ତୁମେ ତ ଆମକୁ ଅନେକ ପୁରାଣ ଗପ କହିଲଣି । ମୟୂର କିପରି କାର୍ତ୍ତିକେୟଙ୍କ ବାହନ ହେଲା, ସେ ବିଷୟରେ ଗୋଟିଏ ଗପ ଆଜି କହିବ ?"

ଅଜା କହିଲେ, ''ଖାଲି ସେତିକି ନୁହେଁ, କୃଷ୍ଣଙ୍କ ମୁଣ୍ଡରେ କିପରି ମୟୂର ପୁଚ୍ଛ ସ୍ଥାନ ପାଇଲା, ତା ମଧ୍ୟ କହୁଛି ଶୁଣ । ତୁମର ଏ ସବୁ କାହାଣୀ ଜାଣିବା ଦରକାର ।

ଥରେ ପଶୁପକ୍ଷୀମାନେ ଗୋଟିଏ ସଭା କରି ନାରଦଙ୍କୁ ସେଠାକୁ ନିମନ୍ତ୍ରଣ କଲେ । ନାରଦ ଆସିବାରୁ ସେମାନେ ତାଙ୍କୁ କହିଲେ— 'ମନୁଷ୍ୟମାନେ ଦେବତାମାନଙ୍କର ସେବାପୂଜା କରି ଧନ୍ୟ ହେଉଛନ୍ତି ଓ ବିପଦରୁ ରକ୍ଷା ପାଉଛନ୍ତି; ମାତ୍ର ଆମ୍ଭେମାନେ ସେ ସୁବିଧା ପାଇପାରୁନାହୁଁ । ଆମକୁ ସେତିକି ସୁବିଧା କରିଦିଅନ୍ତୁ ।'

ନାରଦ କହିଲେ—'ଆଚ୍ଛା, ତୁମ୍ଭେମାନେ ମୋ ସଙ୍ଗେ ଆସ । ଏହା କହି ସେ ସେମାନଙ୍କୁ ସାଥିରେ ନେଇ ଦେବସଭାରେ ପହଞ୍ଚିଲେ ଏବଂ ସେମାନଙ୍କ ଆପତ୍ତି ଦେବତାମାନଙ୍କୁ ଜଣାଇଲେ । ବିସ୍ତର ଆଲୋଚନା ପରେ ସ୍ଥିର ହେଲା ଯେ ସେହିଦିନଠାରୁ ପଶୁ-ପକ୍ଷୀମାନେ ଦେବଦେବୀଙ୍କର ବାହନ ହୋଇ ତାଙ୍କୁ ନିଆ ଆଣ କରିବେ ।

ଏହାପରେ ଲକ୍ଷ୍ମୀ, ସରସ୍ୱତୀ, ଗଣେଶ, ଦୁର୍ଗା, ଯମ ପ୍ରଭୃତି ଦେବଦେବୀମାନେ ନିଜ ନିଜ ପାଇଁ ଗୋଟିଏ ଗୋଟିଏ ବାହନ ବାଛିନେଲେ । ଶେଷକୁ ରହିଗଲା ମୟୂର, କାରଣ ତାର ରୂପ ଅସୁନ୍ଦର ଥିବାରୁ କେହି ତାକୁ ଆଦରିଲେ ନାହିଁ । ସେ କାଳରେ ମୟୂରର ରୂପ ଅତି କୁତ୍ସିତ ଥିଲା । ଏ ଘଟଣା ଦେଖି ବିଷ୍ଣୁ ବଡ଼ ବ୍ୟସ୍ତ ହୋଇପଡ଼ିଲେ । ସେ ସ୍ୱର୍ଗଲୋକର କାରିଗର ବିଶ୍ୱକର୍ମାଙ୍କୁ କହିଲେ, 'ତୁମେ ଇନ୍ଦ୍ରଧନୁର ରଙ୍ଗ ଦେଇ ମୟୂରର ରୂପକୁ ସଜାଇଦିଅ । ମୁଁ ତା ଉପରେ ବସି ଦେବସଭାକୁ ଯିବି ।'

ବିଶ୍ୱକର୍ମା ତାଙ୍କ କାମରେ ଲାଗିପଡ଼ିଲେ; ମାତ୍ର ରାତି ସାରା ଲାଗି ଲାଗି ମଧ୍ୟ କାମ ସାରିପାରିଲେ ନାହିଁ । ତେଣେ ଦେବସଭାର ସମୟ ହୋଇଗଲା । ଅନ୍ୟ ଦେବଦେବୀମାନେ ନିଜ ନିଜ ବାହନରେ ବସି ସଭାସ୍ଥଳରେ ଉପସ୍ଥିତ ହେଲେ । କୃଷ୍ଣଙ୍କର ବିଳମ୍ବ ହେବାରୁ ଗରୁଡ଼ ଗଲେ ତାଙ୍କୁ ଆଣିବାକୁ । ସେତେବେଳଯାଏ ମଧ୍ୟ ବିଶ୍ୱକର୍ମା କାମ ସାରି ନ ଥାନ୍ତି । ବିଷ୍ଣୁ ଗରୁଡ଼ ଉପରେ ବସି ସଭାକୁ ଯାଉଥିବାର ଦେଖି ମୟୂର ଅତ୍ୟନ୍ତ ଶୋକାକୁଳ ହୋଇ ତାଙ୍କୁ କହିଲା, 'ପ୍ରଭୁ, ମୋର କୌଣସି ଦୋଷ ନାହିଁ । ବିଶ୍ୱକର୍ମା ତାଙ୍କ କାମ ସାରି ନ ଥିବାରୁ ମୁଁ ଠିକ୍ ସମୟରେ ଆପଣଙ୍କୁ ଆଣିବାକୁ ଯାଇପାରି ନ ଥିଲି ।'

ବିଷ୍ଣୁ କହିଲେ, 'ମୁଁ ସେ କଥା ଜାଣେ । ତୋ ଭକ୍ତିରେ ମୁଁ ସନ୍ତୁଷ୍ଟ ହୋଇଛି । ତତେ ନିରାଶ କରିବି ନାହିଁ । ତୁ ମୋର ବାହନ ହୋଇଥାନ୍ତୁ, ଏଣିକି ମୁଁ ତୋର ବାହନ ହେବି । ତତେ ମୁଣ୍ଡ ଉପରେ ବସାଇବି ।' ଏହା କହି ସେ ମୟୂର ଦେହରୁ ଚନ୍ଦ୍ରକାଟିଏ ଆଣି ନିଜର ମୁଣ୍ଡରେ ଖୋସିଲେ ଏବଂ କହିଲେ—'ତୁ ଏଥର କାର୍ତ୍ତିକେୟଙ୍କର ବାହନ ହେବୁ ।'

ଗପଟି ଶେଷ କରି ଅଜା ପଚାରିଲେ, "ଗପଟି କେମିତି ଲାଗିଲା ?" "ଚମତ୍କାର !" ଉତ୍ତର ଦେଲା ଆଲୋକ । ଅନ୍ୟ ପିଲାମାନେ ମଧ୍ୟ ଅଜାଙ୍କୁ ପ୍ରଶଂସା କରି ଆଉ ନୂଆ ଗପ ଶୁଣାଇବା ଲାଗି ତାଙ୍କୁ ଅନୁରୋଧ କଲେ ।

ଅଜା କହିଲେ, "ନାନା ମୁନିଙ୍କର ନାନା ମତ । ଏଇ ଗୋଟିଏ ବିଷୟରେ ଅନ୍ୟ ପୁରାଣମାନଙ୍କରେ ଯାହା ଅଛି କହୁଛି ।

"ତୁମ୍ଭେମାନେ ଜାଣିଥିବ ଶ୍ରୀକୃଷ୍ଣ ପିଲାଦିନେ ସର, ଲହୁଣି ଖାଇବାକୁ ଭାରି ଭଲ ପାଉଥିଲେ । ମାଆଙ୍କୁ ଲୁଚାଇ ଶିକାରୁ ଲହୁଣି ଚୋରି କରି ଖାଉଥିଲେ । ଦିନେ ସେ ଏହିପରି ଲହୁଣୀ ଦରଣ୍ଡୁଥିବା-ବେଳେ ଦହି ହାଣ୍ଡି ଭାଙ୍ଗିଗଲା । ତାଙ୍କ ମାଆ ଯଶୋଦା ଏହା ଦେଖି କ୍ରୋଧ ସମ୍ଭାଳି ପାରିଲେ ନାହିଁ । ଗୋଟାଏ ପଥର ଖଲରେ ଶ୍ରୀକୃଷ୍ଣଙ୍କୁ ବାନ୍ଧିଦେଲେ ।

ଯଶୋଦା ନିଜ କାମରେ ଚାଲିଗଲାପରେ କୃଷ୍ଣ ସେ ପଥର-ଖଲକୁ ଟାଣି ଟାଣି ବଣରେ ଯାଇ ହାଜର । ବଣ ଭିତରେ କେତେକ ମୟୂର ପୁଚ୍ଛ ମେଲାଇ ନାଚୁଥାନ୍ତି । ତାଙ୍କ ଚାରିପଟେ ଘେରି ରହିଥାନ୍ତି ମୟୂରୀଦଳ । କୃଷ୍ଣ ତନ୍ମୟ ହୋଇ ସେ ଦୃଶ୍ୟ ଦେଖୁଥାନ୍ତି । ଏହି ସମୟରେ ଯଶୋଦା ପୁଅକୁ ଖୋଜି ଖୋଜି ସେଠାରେ ଆସି ପହଞ୍ଚିଲେ । ତାଙ୍କୁ ଦେଖି ମୟୂରମାନେ ବଣକୁ ପଳାଇଗଲେ । ଗୋଟିଏ ଚନ୍ଦ୍ରିକା ତାଙ୍କ ଡେଣାରୁ ଛିଡ଼ି ତଳେ ପଡ଼ିଯାଇଥିଲା । କୃଷ୍ଣ ତାକୁ ଗୋଟାଇ ଆଣି ନିଜ ମୁଣ୍ଡରେ ଖୋସି ନାଚିବାକୁ ଲାଗିଲେ । ସମସ୍ତ ବ୍ରଜପୁର ଭିତରେ ତାଙ୍କ ମୁଣ୍ଡର କେଶ ସୁନ୍ଦର ଓ କୁଞ୍ଚିତ ଥିଲା । ସେଥିରେ ମୟୂର ପୁଚ୍ଛଟି ଖଞ୍ଜା ହେବାରୁ ଅତ୍ୟନ୍ତ ସୁନ୍ଦର ଦେଖାଗଲା । ତାକୁ ଦେଖି ଯଶୋଦାଙ୍କର ରାଗ କୁଆଡେ ଉଭେଇ-ଗଲା । ସେ ପୁଅର ବନ୍ଧନ ଫିଟାଇଦେଇ କୋଳ କରି ତାଙ୍କୁ ଘରକୁ ନେଇ ଆସିଲେ ।

ଅଜା କହିଲେ, କାର୍ତ୍ତିକେୟଙ୍କ ମୟୂର ବାହନ ବିଷୟରେ ଆଉ ଗୋଟିଏ କଥା ସ୍କନ୍ଦପୁରାଣରେ ଅଛି । ଥରେ ତାରକାସୁର ସ୍ୱର୍ଗରେ ବହୁତ ଉତ୍ପାତ କଲା । ତା ଅତ୍ୟାଚାରରେ ଦେବତାମାନେ ବ୍ୟତିବ୍ୟସ୍ତ ହୋଇପଡ଼ିଲେ । ଏହା ଦେଖି ବିଷ୍ଣୁ କାର୍ତ୍ତିକେୟଙ୍କୁ

ଦେବସେନାମାନଙ୍କର ସେନାପତିରୂପେ ଅସୁର ସଙ୍ଗେ ଯୁଦ୍ଧ କରିବାକୁ ପଠାଇଲେ । ଦେବତାମାନେ ଆନନ୍ଦିତ ହୋଇ ମହାନଦୀ କୂଳରେ କାର୍ତ୍ତିକେୟଙ୍କର ଅଭିଷେକ କରାଇଲେ । ସେହି ଉତ୍ସବରେ ଦେବତା-ମାନଙ୍କ ତରଫରୁ ତାଙ୍କୁ ନାନା ଉପହାର ଓ ବସନଭୂଷଣ ଦିଆଗଲା । ବିଷ୍ଣୁ ଦେଲେ ବୈଜୟନ୍ତୀମାଳା, ଗଙ୍ଗା ଅମୃତପୂର୍ଣ୍ଣ କମଣ୍ଡଳୁ ଏବଂ ପାର୍ବତୀ ଦେଲେ ଦୁଇଟି ଦିବ୍ୟ ବସ୍ତ୍ର । ମହାନଦୀ ଅକ୍ଷମାଳା ଏବଂ ବୃହସ୍ପତି ବ୍ରହ୍ମଦଣ୍ଡ ଉପହାର ଦେଲେ । ଏହିପରି ବିଭିନ୍ନ ଉପହାର ମଧ୍ୟରେ କାର୍ତ୍ତିକେୟ ପକ୍ଷୀରାଜ ଗରୁଡ଼ଙ୍କଠାରୁ ପାଇଥିଲେ ମୟୂର ବାହନ ।

ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ, ମୟୂର ବାହନ ଉପରେ ବସି କାର୍ତ୍ତିକେୟ ତାରକାସୁରର ସମ୍ମୁଖୀନ ହେଲେ । ଭୀଷଣ ଯୁଦ୍ଧ ଆରମ୍ଭ ହେଲା । ଏହି ଯୁଦ୍ଧରେ ଅସୁରର ଅନେକ ସୈନ୍ୟ ମରିଯିବାରୁ ସେ ଗୋଟାଏ ଭୟଙ୍କର ଗଦା ଧରି କାର୍ତ୍ତିକେୟଙ୍କୁ ଆକ୍ରମଣ କଲା । ସେ ଗଦାରେ ଲକ୍ଷେ ଘଣ୍ଟା ବନ୍ଧା ହୋଇଥିବାରୁ ଭୀଷଣ ଶବ୍ଦ କରୁଥିଲା । ଅସୁର ସେହି ଗଦାରେ ମୟୂରକୁ ପ୍ରହାର କରିବାରୁ ସେ କଷ୍ଟରେ ବାଟ ପଛକୁ ଘୁଞ୍ଚି ଆସିଲା । ଏତିକବେଳେ ବିଷ୍ଣୁ କାର୍ତ୍ତିକେୟଙ୍କୁ ଅସୁରର ପ୍ରତିଜ୍ଞା ମନେ ପକାଇଦେଲେ । ସେ ପ୍ରତିଜ୍ଞା କରି କହିଥିଲା ଯେ ସୂର୍ଯ୍ୟାସ୍ତ ପରେ ତାକୁ କେହି ମାରିପାରିବେ ନାହିଁ । ସୂର୍ଯ୍ୟ ବୁଡ଼ି ଆସୁଥିବାରୁ ଦେବତାମାନେ ସମସ୍ତ ଶକ୍ତି ଦେଇ ଯୁଦ୍ଧ କଲେ । ଫଳରେ ତାରକାସୁରର ମୃତ୍ୟୁ ଘଟିଲା ।

ଅନ୍ୟ ଏକ ପୁରାଣମତରେ ଇନ୍ଦ୍ର ମୟ ଦୈତ୍ୟକୁ ମାରିଲା-ବେଳେ ସେ କାତର କଣ୍ଠରେ ଇନ୍ଦ୍ରଙ୍କୁ ପ୍ରାର୍ଥନା କଲା, 'ପ୍ରଭୁ ! ମତେ ମାରିଲ ତ ମାରିଲ; କିନ୍ତୁ ମୋ ନାମ ଯେପରି ପୃଥିବୀରୁ ଲୋପ

ନ ପାଏ, ତାର ବ୍ୟବସ୍ଥା କରିବ ।' ଇନ୍ଦ୍ର କହିଲେ, 'ଆଚ୍ଛା, ମୁଁ ଏହି ବ୍ୟବସ୍ଥା କରୁଛି ଯେ ଶିବଙ୍କ ଔରସରେ ଯେଉଁ ଷଡ଼ାନନ ପୁତ୍ର (କାର୍ତ୍ତିକେୟ) ଜନ୍ମ ହେବେ, ତୁ ତାଙ୍କୁ ସାହାଯ୍ୟ କରିବୁ । ସେ ଯେତେବେଳେ ଗଣେଶଙ୍କ ସଙ୍ଗେ ବିବାଦ କରି ପୃଥିବୀ ପରିକ୍ରମା କରିବାକୁ ବାହାରିବେ, ସେତେବେଳେ ତାଙ୍କର ବାହନ ଖୋଜା-ପଡ଼ିବ । ତୁ ପକ୍ଷୀ ରୂପ ଧରି ତାଙ୍କୁ ପିଠିରେ ବସାଇ ଆକାଶରେ ଉଡ଼ାଇ ନେଇଯିବୁ । ତାହାହେଲେ କାଳକାଳକୁ ଲୋକମାନେ ତୋତେ ମନେ ରଖିବେ ।'

ତାହାହିଁ ହେଲା । ଇନ୍ଦ୍ରଙ୍କ ଆଶୀର୍ବାଦରୁ ମୟୁ ଦୈତ୍ୟ ଏକ ସୁନ୍ଦର ପକ୍ଷୀରୂପ ଧରି କାର୍ତ୍ତିକେୟଙ୍କୁ ପିଠିରେ ବସାଇଲା ଏବଂ ପୃଥିବୀ ବୁଲାଇଆଣିଲା । ମୟୁ ଦୈତ୍ୟର ବଂଶ ବୋଲି ତାର ନାମ ହେଲା ମୟୂର । ସେହିଦିନଠାରୁ ସେ କାର୍ତ୍ତିକେୟଙ୍କର ବାହନରୂପେ ଭାରତରେ ପୂଜା ପାଉଛି ।"

ଆଲୋକ କହିଲା, "ଅଜା, ତୁମେ ଆମକୁ ଆଜି ଅନେକ ଗପ କହିଲ । ଶାସ୍ତ୍ର ପୁରାଣରେ ଏତେ ସୁନ୍ଦର ସୁନ୍ଦର ଗପ ରହିଛି, ଆମକୁ ଜଣା ନ ଥିଲା । ଏକେ ତ ମୟୂର କାର୍ତ୍ତିକେୟଙ୍କର ବାହନ, ତା ଛଡ଼ା ସେ ଆମ ଜାତୀୟ ପକ୍ଷୀ । ଆମେ କେବଳ ତାର ସୁନ୍ଦର ରୂପ ଦେଖି ଖୁସି ହେଉଥିଲୁ । ଏ ସବୁ କଥା ଜାଣିବା ପରେ ମୟୂର ପ୍ରତି ଆମର ଶ୍ରଦ୍ଧା ବଢ଼ିଗଲା । ଆମକୁ ଯଦି କିଏ ଗୋଟିଏ ମୟୂର ଛୁଆ ଦିଅନ୍ତା, ଆମେ ତାକୁ ପୋଷା ମନାଇ ରଖନ୍ତୁ ।"

ଅଜା କହିଲେ, "ଆଚ୍ଛା ହଉ । ତୁମେ ଟିକିଏ ବଡ଼ ହୋଇ-ଯାଅ । ବଣ ମୁଲକରେ ମୋର ଚିହ୍ନା ଲୋକ ଅଛନ୍ତି । ମୁଁ ତାଙ୍କୁ କହିଲେ ସେ ଗୋଟିଏ ମୟୂର ଛୁଆ ଆଣିଦେବେ ।"

ଅଜାଙ୍କ କଥା ସରିଲବେଳକୁ ରାତି ପ୍ରାୟ ଆଠଟା ବାଜି-ଯାଇଥିଲା । ଏତେବେଳଯାଏ ପିଲାମାନେ ତନ୍ମୟ ହୋଇ ଗପ ଶୁଣୁଥିଲେ । ସାମ୍ନାରେ ମନୋଜ, ଧରଣୀ, ସୁରେନ୍ଦ୍ର, ମିନା ପ୍ରଭୃତିଙ୍କୁ ଲକ୍ଷ୍ୟ କରି ଅଜା କହିଲେ, "ଆଜି ଏତିକି ଥାଉ । ତୁମ୍ଭେମାନେ ଘରକୁ ଯାଅ, ପିଲାମାନେ । ବେଶି ରାତି ହେଲେ ମାଆ ତୁମର ଗାଳିଦେବେ ।"

ପିଲାମାନେ ଉଠିଲେ । ଘରକୁ ଯିବା ପୂର୍ବରୁ ଛୁଟ୍‌ଟା କହିଲା, "ଅଜା, ସେମାନଙ୍କୁ କହିଦେଉଛି କାଲି ସନ୍ଧ୍ୟାବେଳେ ମଧ ଆସିବେ । ଗପ ଶୁଣିବା । ପଅରଦିନ ତ ଆମେ ଚାଲିଯିବୁ ।"

"ହଁ, ହଁ, ଆସନ୍ତୁ ସେମାନେ", ଅଜା ଏହା କହି ନିଜେ ଯିବାକୁ ଉଠିଲେ । ସେ ସନ୍ଧ୍ୟାର ବୈଠକ ଏତିକିରେ ଶେଷ ହେଲା ।



# କେତେଡ଼ ରାଜକୀୟ ଭଙ୍ଗିମା ତାର !

ତା ପରଦିନ ସନ୍ଧ୍ୟା ସାଢ଼େ ଛଅଟା ବେଳକୁ ସୁରେନ୍ଦ୍ର, ଧରଣୀ, ଉମା, ମନୋଜ ପ୍ରଭୃତି ସାହିର ପିଲାମାନେ ଆଲୋକର ମାମାଙ୍କ ପିଣ୍ଡାରେ ଅପେକ୍ଷା କରି ବସିଥାନ୍ତି । ଗୁପ୍ତା ଆସି କହିଲା, "ଅଜା ଆଜି ନାହାନ୍ତି । ବନ୍ଧୁଘରକୁ ଯାଇଛନ୍ତି । ତେବେ ମାମୁ ଅଛନ୍ତି । ସେ ବର୍ତ୍ତମାନ ଆଲୋକ ଭାଇକୁ ସାଙ୍ଗରେ ନେଇ ଆସି ପହଞ୍ଚିବେ ।"

ଗୁପ୍ତା ପାଟିରୁ କଥା ନ ସରୁଣୁ କିଶୋରବାବୁ ଆସି ପହଞ୍ଚିଗଲେ । ତାଙ୍କ ସାଙ୍ଗରେ ଥିଲା ଆଲୋକ । ପିଲାମାନଙ୍କୁ ଲକ୍ଷ୍ୟ କରି କିଶୋରବାବୁ କହିଲେ, ପିଲାଏ, ଆଜି ତ ଅଜା ନାହାନ୍ତି । କଣ କରିବ ?"

"ଆମେ ଗପ ଶୁଣିବୁ,"—ସମସ୍ତେ ଏକ ସ୍ୱରରେ କହି ଉଠିଲେ ।

"କାଲି ଅଜାଙ୍କଠାରୁ କି ଗପ ଶୁଣିଥିଲ ?" ପଚାରିଲେ କିଶୋରବାବୁ ।

"ମୟୂର ବିଷୟରେ ପୁରାଣ କଥା ସବୁ ଅଜା କହୁଥିଲେ," ଉତ୍ତର ଦେଲା ଆଲୋକ ।

କିଶୋରବାବୁ କହିଲେ, "ମୟୂର ବିଷୟରେ ତ ଅନେକ ଗପ ଶୁଣିଲଣି । ଆଜି ଗୋଟିଏ ଦିଓଟି ଗୀତ ବୋଲାଯାଉ । କିଏ ବୋଲିବ ? କିନ୍ତୁ ଯାହା ବୋଲ, ସେଇ ମୟୂର ବିଷୟରେ ହୋଇଥିବା ଦରକାର ।"

ଗୁପ୍ପା ଓ ଉମା ଏକ ସଙ୍ଗେ ହାତ ଟେକିଲେ । ତେଣୁ କିଶୋରବାବୁ କହିଲେ, "ହଉ ବୋଲ ।"

ଗୁପ୍ପା ଓ ଉମା ତାଙ୍କ ପାଠ୍ୟପୁସ୍ତକରେ ପଢ଼ିଥିବା 'ଜାତୀୟ ପକ୍ଷୀ' ପଦ୍ୟଟି ବୋଲିଲେ । ମାମୁ କହିଲେ, "ଧରଣୀ, ତୁ କଣ ଜାଣିଚୁ ଗୋଟିଏ ବୋଲ୍ ।" ଧରଣୀ ସ୍ୱର ଧରି ଗାଇଲା—

ତୁଚ୍ଛା ନାମ କୋଳି ମଧୁ ବୋଲି ବୋଲି
ଦେଇଛ ହେ ଚଲ୍ଲେ ଭଣ୍ଡାଇ ।
କି ଚିତ୍ର ବିଚିତ୍ର ମୟୂରର ଦେହ
ବୋବାଳି ଶୁଣିଲେ ନ ଆସଇ ସ୍ନେହ
ଜନ୍ମି ମଞ୍ଜି କଳା କୋକିଳ କଣ୍ଠରେ
ପୀୟୂଷ ଦେଇଛ ପୂରାଇ । ୧ ।

ପଲାଶକୁ କରି କେଡ଼େ ମନୋହର
ଦେଇନାହଁ ତିଳେ ସୁଗନ୍ଧ ତହିଁର
ଦୃଷ୍ଟି ଅଗୋଚର କସ୍ତୂରି ମୃଗକୁ
ଦେଇଛ ସୌରଭେ ଭସାଇ । ୨ ।

ଧନ ଅଛି ଯାର ଉଚ୍ଚ ମନ ନାହିଁ
ଉଚ୍ଚ ମନ ଥିଲେ ଉଦରାନ୍ନ ନାହିଁ
ତୁମ ମାୟାଜାଲେ ଧନ୍ଦ ହୋଇ ନର
ଭ୍ରମୁଥାଏ ବୁଦ୍ଧି ହରାଇ । ୩ ।

କିଶୋରବାବୁ ଗୀତ ଶୁଣି ଧାରି ଧରଣୀକୁ ପ୍ରଶଂସା କରି କହିଲେ, "ବାଃ, ବଢ଼ିଆ ଗାଇଛୁ ! ଏହାର ଅର୍ଥ ଯମସ୍ତେ ବୁଝିପାରି ନ ଥିବ । ଏହାର ମର୍ମ ହେଲା ଏ ପୃଥିବୀରେ ଭଲ ମନ୍ଦ ଉଭୟ ମିଶିକରି ଅଛି । ଯାହାକୁ ଆମେ ଖରାପ ବା ଶ୍ରେଷ୍ଠ କହୁ, ତାଠାରେ

# କେତେ ରାଜକୀୟ ଭଙ୍ଗିମା ତାର !

ତା ପରଦିନ ସନ୍ଧ୍ୟା ସାଢ଼େ ଛଅଟା ବେଳକୁ ସୁରେନ୍ଦ୍ର, ଧରଣୀ, ଉମା, ମନୋଜ ପ୍ରଭୃତି ସାହିର ପିଲାମାନେ ଆଲୋକର ମାମାଙ୍କ ପିଣ୍ଡାରେ ଅପେକ୍ଷା କରି ବସିଥାନ୍ତି । ଭୃତ୍ୟ ଆସି କହିଲା, "ଅଜା ଆଜି ନାହାନ୍ତି । ବନ୍ଧୁଘରକୁ ଯାଇଛନ୍ତି । ତେବେ ମାମୁ ଅଛନ୍ତି । ସେ ବର୍ତ୍ତମାନ ଆଲୋକ ଭାଇକୁ ସାଙ୍ଗରେ ନେଇ ଆସି ପହଞ୍ଚିବେ ।"

ଭୃତ୍ୟ ପାଟିରୁ କଥା ନ ସରୁଣୁ କିଶୋରବାବୁ ଆସି ପହଞ୍ଚିଗଲେ । ତାଙ୍କ ସାଙ୍ଗରେ ଥିଲା ଆଲୋକ । ପିଲାମାନଙ୍କୁ ଲକ୍ଷ୍ୟ କରି କିଶୋରବାବୁ କହିଲେ, "ପିଲାଏ, ଆଜି ତ ଅଜା ନାହାନ୍ତି । କଣ କରିବ ?"

"ଆମେ ଗପ ଶୁଣିବୁ,"—ସମସ୍ତେ ଏକ ସ୍ୱରରେ କହି ଉଠିଲେ ।

"କାଲି ଅଜାଙ୍କଠାରୁ କି ଗପ ଶୁଣିଥିଲ ?" ପଚାରିଲେ କିଶୋରବାବୁ ।

"ମୟୂର ବିଷୟରେ ପୁରାଣ କଥା ସବୁ ଅଜା କହୁଥିଲେ," ଉତ୍ତର ଦେଲା ଆଲୋକ ।

କିଶୋରବାବୁ କହିଲେ, "ମୟୂର ବିଷୟରେ ତ ଅନେକ ଗପ ଶୁଣିଲଣି । ଆଜି ଗୋଟିଏ ଦି'ଓଟି ଗୀତ ବୋଲାଯାଉ । କିଏ ବୋଲିବ ? କିନ୍ତୁ ଯାହା ବୋଲ, ସେଇ ମୟୂର ବିଷୟରେ ହୋଇଥିବା ଦରକାର ।"

ରୁପ୍ପା ଓ ଉମା ଏକ ସଙ୍ଗେ ହାତ ଟେକିଲେ । ତେଣୁ କିଶୋରବାବୁ କହିଲେ, "ହଉ ବୋଲ ।"

ରୁପ୍ପା ଓ ଉମା ତାଙ୍କ ପାଠ୍ୟପୁସ୍ତକରେ ପଢ଼ିଥିବା 'ଜାଣିପୁ ପକ୍ଷୀ' ପଦ୍ୟଟି ବୋଲିଲେ । ମାମୁ କହିଲେ, "ଧରଣୀ, ତୁ କଣ ଜାଣିଛୁ ଗୋଟିଏ ବୋଲ୍ ।" ଧରଣୀ ସ୍ୱର ଧରି ଗାଇଲା—

ତୁଚ୍ଛା ନାମ କୋଇଲି ମଧୁ ବୋଲି ବୋଲି
ଦେଇଛ ହେ ଲୋକେ ଭଣ୍ଡାଇ ।
କି ଚିତ୍ର ବିଚିତ୍ର ମୟୂରର ଦେହ
ବୋବାଳି ଶୁଣିଲେ ନ ଆସଇ ସ୍ନେହ
କଳି ମସି କଳା କୋକିଳ କଣ୍ଠରେ
ପୀୟୂଷ ଦେଇଛ ପୂରାଇ । ୧ ।

ପଲାଶକୁ କରି କେଡ଼େ ମନୋହର
ଦେଇନାହଁ ତହିଁ ସୁଗନ୍ଧ ତହିଁର
ଦୃଷ୍ଟି ଅଗୋଚର କଣ୍ଟାଫିଲିକିକୁ
ଦେଇଛ ସୌରଭେ ଭସାଇ । ୨ ।

ଧନ ଅଛି ଯାର ଉଚ୍ଚ ମନ ନାହିଁ
ଉଚ୍ଚ ମନ ଥିଲେ ଉଦରାନ୍ନ ନାହିଁ
ତୁମ ମାୟାଜାଲେ ଧନ୍ଦ ହୋଇ ନର
ଭ୍ରମୁଥାଏ ବୁଦ୍ଧି ହରାଇ । ୩ ।

କିଶୋରବାବୁ ଗୀତ ଶୁଣି ସାରି ଧରଣୀକୁ ପ୍ରଶଂସା କରି କହିଲେ, "ବାଃ, ବଢ଼ିଆ ଗାଇଛୁ ! ଏହାର ଅର୍ଥ ସମସ୍ତେ ବୁଝିପାରି ନ ଥିବ । ଏହାର ମର୍ମ ହେଲା ଏ ପୃଥିବୀରେ ଭଲ ମନ୍ଦ ଉଭୟ ମିଶିକରି ଅଛି । ଯାହାକୁ ଆମେ ଖରାପ ବା ଶ୍ରେଷ୍ଠ କହୁ, ତାଠାରେ

ମଧ୍ୟ ଭଲ ଗୁଣ ରହିଛି । ମନୁଷ୍ୟ ତାହା ବୁଝି ନ ପାରି ମିଛରେ



ଭଗବାନଙ୍କୁ ଦୋଷ ଦିଏ । କମରେ ପିତା ଅଛି ସତ, ମାତ୍ର ତାର ଗୁଣ କେଡ଼େ ଉପକାରୀ ! ସେହିପରି କୋଇଲିର ରୂପ କଳା ଏବଂ ମୟୂରର ସ୍ୱର କର୍କଶ । ହେଲେ ମଧ୍ୟ ତାଙ୍କ-ଠାରେ କଣ ଭଲ ଗୁଣ ନାହିଁ ? ପଳାଶ ଫୁଲର ସୁଗନ୍ଧ ନ ଥିଲେ ବି ଲୋଭନୀୟ ରୂପ ଅଛି । କଣ୍ଟାଫିରିକ ଫୁଲ ଖୁବ୍ ଶ୍ରେଷ୍ଠ, କିନ୍ତୁ ତାର ବାସ୍ନା ବଡ ମହକାଇ-ଦିଏ । ପୃଥିବୀରେ ସବୁ ଜିନିଷ ଏହିପରି । ଯାହାଠାରେ ଯାହା ଭଲ ଗୁଣ ଅଛି, ତାହା ଆମେ ଗ୍ରହଣ କରିବା ।”

“କୋଇଲିର ମିନା ମଧୁର କଣ୍ଠ ଅଛି, ମୟୂରର କଣ ଭଲ ଗୁଣ ଅଛି ?” ଉମା ପଗ୍ଚରିଲା ।

ମାମୁ କହିଲେ, “ଗୁଣ କାହାର ନାହିଁ ? ଦୁବ ଘାସର ବି ଗୁଣ ଅଛି । ଆମେ ଅନେକ କଥା ଜାଣୁ ନା । ତୁମେ ଷଢ଼େଇକଳାର ଛଉ ନାଚ କଥା ଶୁଣିଥିବ । ସେଥିରେ ‘ମୟୂର ନୃତ୍ୟ’ ନାମକ ଏକ ପ୍ରକାର ନୃତ୍ୟ ଦେଖାଯାଏ । ମୟୂର ନାଚୁଥିବା ବେଳର ଭଙ୍ଗୀକୁ ଦେଖି ତାହା ରଚନା କରାଯାଇଛି । ଶାଢ଼ୀ ବୁଣାଳମାନେ ମୟୂର କଣ୍ଠର ରଙ୍ଗକୁ ଦେଖି ‘ମୟୂରକଣ୍ଠୀ’ ଶାଢ଼ୀ ତିଆରି କରିଛନ୍ତି । ଆଲୁଅରେ ଦେଖିଲେ ସେ ଶାଢ଼ୀର ରଙ୍ଗ ବଦଳିଲା ପରି ଖୁବ୍ ସୁନ୍ଦର ଦେଖାଯାଏ । ମୟୂରପୁଚ୍ଛରେ

ଠାକୁରଙ୍କ ପଙ୍ଖା ତିଆର ହୁଏ । 'ସତ୍ୟନାରାୟଣ ପାଲଗାୟକମାନେ ମୟୂର ଚନ୍ଦ୍ରିକାରେ ଅସ୍ଥାନ ସଜାନ୍ତି । ଆଦିବାସୀ ପାଲଦଳ ଏହାକୁ ସେମାନଙ୍କ ଟୋପିରେ ଖୋସିଥାନ୍ତି । ସଙ୍ଗୀତକାରମାନେ ଯେଉଁ 'ସପ୍ତସ୍ୱର' କଳ୍ପନା କରିଛନ୍ତି—'ସା ରେ ଗା ମା ପା ଧା ନି' ସେଥିରେ ମୟୂର ଶବ୍ଦର ସ୍ଥାନ ଅଛି । ତାହା କେଉଁଟି ଜାଣ ?''

ଗାୟତ୍ରୀ କହିଲା, ''ସା'' ।

ମାମୁ କହିଲେ, ''ଠିକ୍ କହିଛୁ, କିନ୍ତୁ ତାର ପୂରାନାମ ଷଡ୍‌ଜ । ସା କେବଳ ଏକ ସଙ୍କେତ । କଣ୍ଠ, ତାଳୁ, ଜିହ୍ୱା, ଦନ୍ତ, ନାସା, ଉରଃ—ଏହି ଛଅଟି ସ୍ଥାନରୁ ଏହି ସ୍ୱର ବାହାରେ ବୋଲି ଏହାକୁ ଷଡ୍‌ଜ କହନ୍ତି । କିନ୍ତୁ ସବୁଠାରୁ ବଡ କଥା ହେଲା ମୟୂରର ନୃତ୍ୟ । ଏହା ଦେଖିଲେ ମନରୁ ସବୁ ଦୁଃଖ ପାସୋରିଯାଏ । ଏପରି ସୁନ୍ଦର ପକ୍ଷୀ ପୃଥିବୀରେ ଅନ୍ୟ କେଉଁଠାରେ ନାହିଁ । ଆଉ ଦୁଇ ଜାତିର ମୟୂର ମଧ୍ୟ ଅଛନ୍ତି । ଗୋଟିକର ବର୍ଣ୍ଣ ଧଳା ଓ ଅନ୍ୟଟିର ବର୍ଣ୍ଣ ନୀଳ ଓ ସବୁଜମିଶା । ମାତ୍ର ଭାରତୀୟ ମୟୂରର ଚୂଳଠାରୁ ଏମାନଙ୍କର ଚୂଳ ବଡ଼, ତେଣୁ ସେତେ ସୁନ୍ଦର ଦିଶେ ନାହିଁ । ମୟୂର ମୁଣ୍ଡରେ ଏଇ ଶିଖା ଅଛି ବୋଲି ତାର ଅନ୍ୟ ନାମ ଶିଖୀ । ତାର ଆଉ କେତେଗୋଟି ନାମ ମଧ୍ୟ ମନେ ରଖ । ମୟୂରର ରବକୁ କେକା କହନ୍ତି ; ସେଥିପାଇଁ ତାର ନାମ କେକୀ । ତାର ପୁଚ୍ଛକୁ ଶିଖଣ୍ଡ, ବର୍ହ ଓ କଳାପ କୁହାଯାଏ, ତେଣୁ ତାର ଅନ୍ୟ ନାମ ହେଲା ଶିଖଣ୍ଡୀ, ବର୍ହୀ ଓ କଳାପୀ । ମୟୂର କଣ୍ଠ ନୀଳ ହୋଇଥିବାରୁ ତାକୁ ନୀଳକଣ୍ଠ କୁହାଯାଏ । ସେ ସାପମାନଙ୍କୁ ଖାଏ ବୋଲି ତାର ନାମ ସର୍ପଭୁକ୍ ବା ଭୁଜଙ୍ଗଭୁକ୍ ।''

ସ୍ୱପ୍ନା ଏହିଠାରେ ପଚାରିଲା, ''ମାମୁ, ମୟୂରକୁ କୁଆଡ଼େ କୋରାପୁଟର କେତେକ ଆଦିବାସୀ 'ମଞ୍ଜୂର' କହନ୍ତି ?''

—"ତୁ କେମିତି ଜାଣିଲୁ ?"

—"ଆମ କ୍ଲାସରେ ଦିନେ ଜଣେ ଆଦିବାସୀ ପିଲା ବୋଲୁଥିଲା,

'କୁକୁଡ଼ା ଡାକଲା କବାଟକୋନେ
ମଞ୍ଜୁର ଡାକଲା ବନେ ।'

ଆମେ ଭାବିଲୁ ସେ 'ମୟୂର'କୁ ଭୁଲ ଉଚ୍ଚାରଣ କରୁଛି, ମାତ୍ର ଶିକ୍ଷକ ମହାଶୟ ଆମକୁ ବୁଝାଇଦେଲେ ଯେ ଏକା ପକ୍ଷୀର ଭିନ୍ନ ଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ନାମ ରହିଥାଏ ।"

କିଶୋରବାବୁ କହିଲେ, "ତା ତ ସତ । କହନ୍ତି ପରା— 'ଦେଶକେ ଫାଙ୍କ୍, ନଈକେ ବାଙ୍କ୍' । ମୟୂର ବିଷୟରେ ତୁମେ ଯେତେ ଗପ ଶୁଣିଛ, ତାହା କଣ ଏକାପରି ? ତାର ସୁନ୍ଦର ପୁଚ୍ଛ ବିଷୟରେ ନାନା ଦେଶରେ ନାନା କାହାଣୀ ରହିଛି । ବସ୍ତର ଅଞ୍ଚଳର ଲୋକ କଥା ଅନୁସାରେ ଏହି ସୁନ୍ଦର ପୁଚ୍ଛ ଯୋଗୁ ମୟୂର ପକ୍ଷୀମାନଙ୍କର ରାଜା ହୋଇଛି । ଯେଉଁଦିନ ପକ୍ଷୀମାନେ ରାଜା ବାଛିବେ ବୋଲି ଠିକ୍ କଲେ, ସେଦିନ ମୟୂର ତାର ଏଇ ପୋଷାକ ପିନ୍ଧି ସର୍ବପ୍ରଥମେ ସଭାସ୍ଥଳରେ ପହଞ୍ଚିଗଲା ଏବଂ ପୁଚ୍ଛ ମେଲାଇ ଠିଆ ହେଲା । ତାହା ଦେଖି ପକ୍ଷୀମାନେ ଏତେ ମୁଗ୍‌ଧ ହୋଇଗଲେ ଯେ ତାକୁ ଭୋଟ ଦେଇ ରଜା କରିଦେଲେ ।

ଏହା ଯଦିଓ ଏକ ଲୋକକାହାଣୀ, ମୟୂର ବାସ୍ତବିକ ପକ୍ଷୀମାନଙ୍କର ରଜା ହେବାର ଯୋଗ୍ୟ । ତାର ଢଙ୍ଗଢାଙ୍ଗ ଦେଖିଲେ ମନେ ହୁଏ, ସେ ଯେପରି କାହାକୁ ଡରିବାକୁ ପ୍ରସ୍ତୁତ ନୁହେଁ । ଯେତେବେଳେ ସେ ନାଚିବାକୁ ଆରମ୍ଭ କରେ, ତୁମେ ଯଦି ତା ସାମନାରେ ଠିଆ ହୋଇ ସେ ଦୃଶ୍ୟ ଉପଭୋଗ କରିବାକୁ ଇଚ୍ଛା

ନକରିବ, ତେବେ ନିରାଶ ହେବ । ଠିକ୍ ସେତିକବେଳେ ସେ ତୁମ ଆଡ଼କୁ ପଛ କରି ବୁଲିପଡ଼ିବ ! ତୁମେ ଆଉ ଥରେ ତା ଆଗପଟକୁ ଯାଅ, ପୁଣି ସେଇ କଥା ! ସେପରିକି ସେ ତୁମ ମର୍ଜି ଜଗି କାମ କରିବାକୁ ଚାହେଁ ନା । ରାଜକୀୟ ମିଜାଜ କି ନା ? ଏଇଥିପାଇଁ ବୋଧହୁଏ ଇଂରେଜମାନେ ମୟୂରକୁ ଗର୍ବୀ କହିଥାନ୍ତି ! ଯଦି ଧୈର୍ଯ୍ୟ ଧରି କିଛି ସମୟ ଗୋଟିଏ ସ୍ଥାନରେ ଠିଆ ହୋଇ ଅପେକ୍ଷା କରିବ, ତେବେ ତା ମନ ଯେତେବେଳେ ହେବ, ସେ ତୁମ ଆଡ଼କୁ ମୁହଁ ବୁଲାଇବ ଏବଂ ସେତିକବେଳେ ତୁମେ ଦେଖିବ ତାର 'ରାଜକୀୟ ଭଙ୍ଗିମା' ଏବଂ ଅପୂର୍ବ ସୌନ୍ଦର୍ଯ୍ୟର ଛଟା ।

ଏ ପ୍ରସଙ୍ଗରେ ଗୋଟିଏ ସତ୍ୟ ଘଟଣା କହୁଛି ଶୁଣ । ଜଣେ ମାର୍କିନ୍ ମହିଳା ଶ୍ରଦ୍ଧାରେ କେତୋଟି ମୟୂର ଓ ମୟୂରୀ ପୋଷିଥିଲେ । ଥରେ ଜଣେ ଡ୍ରାଇଭର ତାଙ୍କ ଦାଣ୍ଡବାଟେ ଯାଇଥିବା ରାସ୍ତାରେ କୁଟା-ବୋଝେଇ ଟ୍ରକ୍‌ଟିଏ ଚଳାଉଥିଲେ । ହଠାତ୍ ତାଙ୍କ ପୋଷା ଅଣ୍ଡିରା ମୟୂରଟା ନବାବୀ ଠାଣିରେ ରାସ୍ତା ମଝିରେ ଆସି ଠିଆ ହୋଇଗଲା । ଡ୍ରାଇଭର ତତ୍‌କ୍ଷଣାତ୍ ବ୍ରେକ୍ ଦେଇ ହର୍ନ୍ ବଜାଇଲେ, ମାତ୍ର କିଛି ଫଳ ହେଲା ନାହିଁ । ତେଣୁ ସେ ଗାଡ଼ି ବୁଲାଇ ନେବାକୁ ବାଧ୍ୟ ହେଲେ । ସେ କୁଆଡ଼େ ଉକ୍ତ ମହିଳାଙ୍କୁ କହୁଥିଲେ, "ମୋ ଜୀବନ ଭିତରେ ଟ୍ରାକ୍‌ଟର, ଟ୍ରକ୍ ବା କାର୍ ଯାହା ମୁଁ ଚଳାଇଛି, କୌଣସି ଥରେ ହେଲେ ଗାଡ଼ି ଆଗରୁ ମୟୂରକୁ ସୂତାଏ ସୁଦ୍ଧା ଘୁଞ୍ଚାଇ ପାରିନାହିଁ । ଗାଡ଼ି ତାକୁ ଆଡ଼େଇ ଯିବ ସିନା, ସେ ଆଦୌ ପାଖେଇବ ନାହିଁ ।"

ଆଉ ଦିନକର ଘଟଣା । ଜଣେ ବୃଦ୍ଧ ନିଗ୍ରୋ କେତେଜଣ ପିଲାଙ୍କୁ ସାଙ୍ଗରେ ଧରି ଗୋଟିଏ ବାଛୁରୀ କିଣିବାକୁ ଉକ୍ତ ମହିଳାଙ୍କ

ପାଖକୁ ଆସୁଥିଲେ । ମହାରାଜା ପୋଷିଥିବା ମୟୂରଟା ତାର ରୂପ ପସରା ମେଲାଇ ବାଟ ଓଗାଳିଲାପରି ସେମାନଙ୍କ ଆଗକୁ ଆସି ହଠାତ୍ ଠିଆ ହୋଇଗଲା । ନିଗ୍ରୋ ପିଲମାନେ ପୂର୍ବରୁ ଏପରି ଅଦ୍ଭୁତ ଜୀବ ଦେଖି ନ ଥିଲେ । ଜଣେ ବାଳକ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "କଣ ସେଇଟା ?" ବୃଦ୍ଧ ସମ୍ମାନର ସହ ମୁଣ୍ଡରୁ ଟୋପି ଉଠାଇ କହିଲେ, ସେ ପକ୍ଷୀମାନଙ୍କର ରାଜା । ତାଙ୍କୁ ପ୍ରଣାମ କର ।" ବୃଦ୍ଧଙ୍କ କଥା ଶୁଣି ପିଲାମାନେ ସମ୍ମାନର ସହ ପକ୍ଷୀରାଜାଙ୍କୁ ପ୍ରଣାମ ଜଣାଇଲେ ।

ସତରେ ସେଇଆ ନୁହେଁ କି ? ତୁମେ ପରା ବର୍ତ୍ତମାନ ବୋଲୁଥିଲ—

'ରହରଙ୍ଗମେ ସାର
କେତେ ରାଜକୀୟ ଭଙ୍ଗିମା ତାର !'

ଆମର ଗର୍ବ ଯେ ଏପରି ଏକ ସୁନ୍ଦର ଏବଂ ରାଜଲକ୍ଷଣଯୁକ୍ତ ପକ୍ଷୀକୁ ଆମେ ଜାତୀୟ ପକ୍ଷୀ ରୂପେ ପାଇଛୁ ।"

